## ଗଣ୍ଠିଷଣ୍ଟି ବିଧାନ

ଏହି ସମ୍ପର୍କରେ କବି ବିଶଦ ବିବରଣୀ ଏକାଧିକ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଯଥା—

"ନାପିତ ନୂତନ ସୂର୍ପେ ଶ୍ରେଣି ଭାଙ୍ଗିକଲା ।
ନବ ତେଲ ପ୍ରଦୀପ ବିଦଗ୍ଧ ଦୂଷ୍ଟିଆଲା ।
ଯେଣି ବାହ୍ମଣେ ଉଚ୍ଚେ ହୁଳହୁଳି ଦେଇ ।
ଗୀତ ଇଚ୍ଛାସୁଖେ ବୀଣା କି ଅବା ବଜାଇ ଯେ ।
ବଜାଇ ବିବିଧ ବାଦ୍ୟ ଦେବୀ ଗଳଖିଲେ ।
ସପତ ଗୁଡ଼ୁ ଭୂଷଣ ସକଳ ତୋଳିଲେ ଯେ ।" ଗ୍ର ୩୦, ଲା: ବି: ।
"ନାପିତ ବନ୍ଧୁବା ସ୍ୱର୍ପ ଦ୍ୱାତେନା ପଣରେ,
ରଞ୍ଜିତ ଲଙ୍କଲୀ ପୀତାମ୍ବର ପନ୍ଧିବରେ ଯେ ।" କୋ: ବ: ସୁ: ।
"ବରକନ୍ୟା ଗଣ୍ଠିଷଣ କଲେ ପରସ୍ପର ।
ଗଣ୍ଠିବନ୍ଧା ନାମ ସାର୍ଥ କଲ ଅବନୀର ଯେ ।" ଗ୍ର ୬୬, କୋ: ବ୍ର: ସୁ: ।

## ବିବାହ ଶୋଭାଯାତ୍ରା

ବର ବରଯାତ୍ରୀ ଦଳବଳସହ ଶୋଭାଯାତ୍ରାରେ ଯିବା ପ୍ରଥା ଓଡ଼ିଶାର ସର୍ବତ୍ର ପ୍ରଚଳିତ । ଧନୀ ଦରିଦ୍ର, ରାଜା ରାଜୁଡ଼ା ସମସ୍ତେ କର୍ତ୍ତବ୍ୟ ଅନୁସାରେ ଶୋଭାଯାତ୍ରାର ଯୋଗାଡ଼ କରନ୍ତି । ରାଜପୁତ୍ର ପୁଷ୍ପକେତୁଙ୍କ ବିବାହ ଶୋଭାଯାତ୍ରାର ଚିତ୍ର, କବି ନିମ୍ନମତେ ଦେଇଛନ୍ତି—

"ଛାଦି ହେଲେ ଲକ୍ଷ୍ୟମାନେ ବସନ୍ତ ଆକୃତି
ଚମ୍ପା ଫୁଟାଇ ରଙ୍ଗଇ ହନ୍ତ ଚନ୍ଦ୍ରଗଡ଼ ।

... ... ... ...

ହାବେଳି ଧ୍ରୁବ ମଣ୍ଡଳ ବଳିଯିବା ହୃଦ ।" କୋ: ବ୍ର: ସୁ: ।

ବର ଦୂରଦେଶରେ ପହଞ୍ଚିବା ପୂର୍ବରୁ ବାଟବରଣ ପ୍ରଥା ଅଛି ।

ଯଥା— "ବେଲ ଦୂରଦେଶ୍ ଆଣି ବର ଆଣି ଗଲେ,
ପଥେ ଆସୁଁ ପୁଷ୍ପମାଳେ ଶାଳକ ବନ୍ଦିଲେ ।"

## ବିବାହ ବିଧାନ

ନାନାବିଧ ବେଦୀବିଧାନ, କନ୍ୟାପିତାଙ୍କର କମ୍ବୁରେ ଅମ୍ବୁଦାନ, ଲାଜାହୋମ, କଣ୍ଠଦେଶରେ ଗଣ୍ଠି ଆଳ ବସନ ଧାରଣ, କନ୍ୟାବରଙ୍କ ଦ୍ୟୂତକ୍ରୀଡ଼ା କୌତୁକ, ପଞ୍ଚଗ୍ରାସି ବିଧାନ, ଲବଣ ଚଉଁରି ବିଧାନ ପ୍ରଭୃତିର ଚିତ୍ର କବି ନିମ୍ନମତେ ଦେଇଛନ୍ତି—

ପୂର୍ଣ୍ଣକୁମ୍ଭ ସ୍ଥାପିତ ପଲ୍ଲବ ଶିରେ ଦେଇ ।
ମଦନାଙ୍କ ଉଲଗ ବିଧାନରେ ଆଗେ ରହି ॥

କନ୍ୟାତାତ ଅମ୍ବୁଦାନେ କମ୍ବୁକଣ୍ଠ ଜଳ ।
ଗଳେ କି ମୁଖ ପୋଛିବା ବ୍ୟାଜେ ଶ୍ରମଝାଳ ॥
ଲଳାବଦନକୁ ଚାହିଁ ଲଜ୍ଜା ଲଭି ହାସ ।
ଶଙ୍କରେ ପଳାଇବ କାହିଁ ଯିବ ନାଶ ଯେ ॥
ରାମା ସ୍ୱାଧୀନଭର୍ତ୍ତୃକା ଅନୁକୂଳ ପୁଂସ ।
ଦୋଇ ମନ୍ତ୍ର ସ୍ୱାନୁରାଗ କରିବେ ପ୍ରକାଶ ॥
ଦୃଢ଼େ ଗଣ୍ଠି ଦିଆଇ ବସନେ ଏ ସମୟେ ।
କନ୍ଧେ ପକାଇ ଗମନ କଲେ ଏ ଶୁଦ୍ଧାନ୍ତେ ॥
ଯୁତଶାଳାରେ ରସିଲେ ସେ ଯୁବନ୍ତ ଯୁବା ।
ଯୁତଶାଳା କଉଡ଼ିକ ଆଦ୍ୟାରମ୍ଭ ଜବା ॥
ସେ ଯୋଗୀନ୍ଦ୍ର ମୋହିନୀ ସମ୍ବାଦ ବଢ଼ାଇ କି ।
କରମୁଠା ଭିତରେ ରଖିଲ କପର୍ଦ୍ଦକ ॥
ଶିରୀଷ ସମ କୋମଳ ଅଙ୍ଗୀ ପଦ ତାର ।
କରାଇ ନ ଦେଲେ ସେ ରସିକେ ବଳାତ୍କାର ॥
ପତ୍ରଗ୍ରାହୀ ବିନାଶନ ବ୍ରତ ପୂର୍ଣ୍ଣକାଳ ।
ବିନାଶ ନ କର ଓଷ୍ଠାମୃତ ଦୋଷ ଗୋଳ ॥"

ଛାନ୍ଦ, କୋ: ବ୍ର: ପୁ: ।

"ଏ ସମୟେ ପରବାଷ୍ପ ବାଜେକଣ୍ଠାକୁ ।
ଲବଣଚର୍ବିଷ ଅର୍ଥେ ଆଣିଲେ ସେଠାକୁ ଯେ ॥
ଅନ୍ତରପାଟ ଅନ୍ତରେ ତରଳାକ୍ଷୀ ରହି ।
ତରଳ ନୟନ ଅନ୍ତେ ବଲ୍ଲଭକୁ ଚାହିଁ ଯେ ॥
ଲବଣ ତଣ୍ଡୁଳ ସହ ପୁରୁଷକୁ ମାର ।
ବଧୂ ପ୍ରାପ୍ତ ବାହୁଡ଼ିଲ ଚଞ୍ଚଳ ଚରଣ ଯେ ॥

× × × ×
× × × ×
× × × ×
× × ×

ବରକନ୍ୟା ଯଜ୍ଞୋପବୀତକୁ ଏହିକାଳେ ।
କନ୍ୟାପାଣେ ଜଗ୍ରୋପଣ ଦ୍ୱିଜବର କଲେ ॥

× × ×

ଧୀରେ ବାସ୍ତମଣ୍ଡପେ ପ୍ରବେଶ ଆସି ହେଲ ।
ବାମ ଦକ୍ଷିଣ ବିଚାର ନ ବସଇ ବାଳା ଯେ ॥

× × ×

ଏ ବିଧିର କଲ ଶିବ ପୁରୋହିତ ସୁତ ।
ବିଧାତା ବିଧାନ ଶ୍ଲୋକ ପଢ଼ିଲ ତ୍ୱରିତ ଯେ ॥

ଶ୍ରବଣେ, ଘେନିଲ ବର ସମୀପେ ବନିତା ।
ସ୍ମରୁଁ ଘେନିଲ ଏତେ ପରମ ପଣ୍ଡିତା ଯେ ॥
ବେଦାନ୍ତ ମନ୍ତ୍ରବିଧିରେ ଆରମ୍ଭିଣ କର୍ମ ।
କ୍ରମରେ ଉଚ୍ଚରେ କଲେ କାନ୍ତା କାନ୍ତ ନାମ ଯେ ॥
ବଶିଷ୍ଠ ଅରୁନ୍ଧତୀ ଶ୍ରୀରାମ ସୀତା ପରି ।
ଶିବ ପାର୍ବତୀ ଏ ଆଦି ଲକ୍ଷ୍ୟମାନ କରି ଯେ ॥
ଦ୍ୱିଜେ ବନ୍ଦନେ ନାସ୍ତିକେଲ ବାଧା ଯେଣୁ ସ୍ତନେ ।
ବିଚ୍ଛଣ ନବେଶିଲେ ତାହାଙ୍କୁ ଦହନେ ଯେ ॥
ମଧୁଶଯ୍ୟା କାଳରେ ଯେ ଚେଜ୍ୟା କରିବାକୁ ।
ଲାଜାହୋମ ନ କଲେଟି ଦହିଲେ ଲଜ୍ଜାକୁ ଯେ ॥
କାନ୍ତା କାନ୍ତ କରପଦ୍ମ କୋକନଦ ଶିଖି ।
ସ୍ନେହ କଥିଲେ ବୋଲି କୁଶବନ୍ଧ କରି ଯେ ॥
ପରାଭବ ଅନ୍ତେ ଦ୍ୱିଜସୁତା ଫେଡ଼ି ଦେଲା ।
ମନୋଭବ ପରାଭବ ଯେଣୁ ହେଉଥିଲା ଯେ ॥
ଛୁଆଁଇଲେ କୁମାରକୁ କୁମାରୀ ଚରଣ ।
ମନ୍ମଥଭୟରୁ କଷ୍ଟେ ପଶିଲା ଶରଣ ଯେ ॥
କମ୍ବୁରେ ଅମ୍ବୁ ତୋଳିଣ ଦେଲା କନ୍ୟାଜାତ ।
କଣ୍ଠକୁ ସମାନ ନୋହୁ କି ଅବା ଗ୍ରୀବତ ଯେ ॥
ବିଭବିଧି ଶେଷ ଯହିଁ ହେଲା ଏ ବିଧିରେ ।
ବରକନ୍ୟା ଘେନି ଗଲେ ଅବରୋଧ ପୁରେ ଯେ ॥"

ଗୀ ୩୦, ଲ: ବ: ।

## କନ୍ୟାଗୁଡ଼

କନ୍ୟା ଶାଶୁଘରକୁ ଯିବାବେଳେ, ଖଇ ଗୁଡ଼ିଯିବା ପ୍ରଥା ସର୍ବତ୍ର ପ୍ରଚଳିତ । "ଜେମା ଭ୍ରାତ ମନ୍ତ୍ରୀଆଦି ଗୁଡ଼ି ବାହାରିଲେ ।" କନ୍ୟାଗୁଡ଼ ପୂର୍ବରୁ ମା, ଝିଅକୁ ଆଲିଙ୍ଗନ କରି ଦୁଃଖଦ୍ରବୀଭୂତ ହୃଦୟରେ ସମୟୋଚିତ ଉପଦେଶ ଦିଏ । ଯଥା—

"ମାତା କୋଳ କରି ପ୍ରିୟ ସୁତାକୁ ଉଆରି,
ତଦୁତ୍ତରେ ରହି ମ୍ଳାନେ ଲୋଳାରେ ବଜେ ଜରି ଯେ ।" ଲ: ବ: ।

ଶ୍ୱଶୁରାଳୟରେ ପ୍ରବେଶ ପରେ ନବବଧୂ ବୟସ୍ଥ ଓ ନମସ୍ୟଙ୍କୁ, ବିଶେଷତଃ ପ୍ରଥମେ ଶାଶୁଙ୍କୁ ସସମ୍ମାନ ପ୍ରଣିପାତ କରିବା ପାରମ୍ପରିକ ରୀତି ଅଛି ।

"ଶାଶୁଙ୍କୁ ଓଳଗି ବାସ ଜାଉଗ୍ରାଳି କଲା ।
ପୁରସିଦ୍ଧ ହୁଳହୁଳୀନାଦେ ଉହୁଳିଲା ଯେ ।" ଲ: ବ: ।

ଉ: ପ: ୧୫

ନବବଧୂମାନଙ୍କର ଶାଶୁ ନଣନ୍ଦ ପ୍ରତି ଭୟଭକ୍ତି ବେଶି । ବୋହୂଙ୍କ ମଧ୍ୟରୁ ଅଧିକାଂଶ ଘରେ ନଣନ୍ଦ ଥିଲେ । ଭବିଷ୍ୟତରେ ଶାଶୁ ପାଲଟିବା ସମ୍ଭାବନା ଥିଲେ ମଧ୍ୟ ନଣନ୍ଦ 'ଖେଣ୍ଡାଖେଣ୍ଡି' କରେ, ଶାଶୁ 'ଶାସନ କରେ'—ଏହି କଥା ଲୋକଙ୍କ ମଧ୍ୟରେ, ବିଶେଷତଃ ସ୍ତ୍ରୀ ମହଲରେ କୁହାବୋଲା ଯୁଗ ଯୁଗ ଧରି ଚାଲିଛି । ବୋହୂ ଉପରେ ଦୁର୍ନାମ-ଶିକା ଛୁଡ଼େ ନାହିଁ, ସେ ଯେଥିରୁ ମୁକ୍ତ । "କେ ଶାଶୁ ନଣନ୍ଦ ଭୟରେ ପ୍ରିୟଙ୍କୁ କହୁ ନ କହୁ ତକ୍ଷଣେ......" ଲ: ବ: ।

## ଯୌତୁକପ୍ରଥା

ଏଥିରୁ କେହି ରକ୍ଷାପାଏ ନାହିଁ । ରାଜାଘରମାନଙ୍କରେ ତାହା ପ୍ରଥମେ ରାଜ ଆଡ଼ମ୍ବରରେ ଆରମ୍ଭ ହୋଇ ସର୍ବତ୍ର ବ୍ୟାପି ଯାଇଛି । କବିଙ୍କ ଭାଷାରେ—

"ଯଉତୁକ ସମ୍ଭାର ଘେନାଇ ସଚିବକୁ
ପ୍ରେଷିତ କଲେ ତ୍ୱରିତ କୁମାରପାଶକୁ ଯେ ।
ଯହିଁ ସେ ସମ୍ଭାର ଯୁବରାଜ ହୋଇ ତୋଷ
ଦେଇଛି ଧନଦ-କୋଷ ପରି ରତ୍ନକୋଷ ଯେ ।
କରି ହସ୍ତ ହରିହସ୍ତ ଯାନ ସମାନରେ
ଲକ୍ଷ ସଂଖ୍ୟକ ଦେଇଛି ସହକ ଚଉରେ ଯେ ।
କାମଧେନୁ ପରି ଧେନୁ ସବତ୍ସା କରିଣ
କୋଟି ପରମିତ ଘେନିଛନ୍ତି ବ୍ରଜଗଣ ଯେ ।
କଥାକୁହା ପିକ ଶୁକ ସାରିକା ଅନେକ
ଅଶେଷ ମଞ୍ଜୁଷ ଚର୍ମ ଅଡ଼େଣୀ ଶାସୁକ ଯେ ।
ବସନପେଡ଼ି ମାନଙ୍କ ସଂଖ୍ୟା ହେବ କାହିଁ
ହାଣ୍ଡୋଲା ସ୍ୟନ୍ଦନ ଯହିଁ ଗଣନାହିଁ ନାହିଁ ଯେ ।
ଏ ବିଧିରେ ପଦାର୍ଥ ସମର୍ପି ଜଣାଇଲା
ସଭୂଷଣ କରି ଦାସୀ ସହସ୍ରେକ ଦେଲା ଯେ ।" ଲ: ବ: ।

## ପର୍ବପର୍ବାଣି

ଓଡ଼ିଶାର ପୁରପଲ୍ଲୀ, ରାଜଧାନୀ, ତୀର୍ଥ ପୀଠମାନଙ୍କରେ ବିବିଧ ପର୍ବପର୍ବାଣିର ବ୍ୟବସ୍ଥା ଅଛି । ପୁରୁଷୋତ୍ତମରେ ବୈଶାଖ ମାସରେ ହେଉଥିବା ଚନ୍ଦନଯାତ୍ରାର ଚିତ୍ର କବି ନିମ୍ନମତେ ଦେଇଛନ୍ତି—

"ନରେନ୍ଦ୍ର ତଡ଼ାଗେ କଶୀନ୍ଦ୍ର ସୁରେନ୍ଦ୍ର ପରିହରି
ନାବରେ ଶିବରେ ବିଜୟ କରି ସୁଖେ ବିହରି ।"

× ×

"ଫସାର ସାର ଘନସାର ପିଟକା ନେ ମାରଇ
କ୍ଷୀର ଦଧି ଧୀର ଲହରୀ ପରି ଭ୍ରମର ଶୋଭି ।"

ଶିଶୁପାଳନ ଚିତ୍ର

ଶୈଶବ ଅବସ୍ଥାରେ 'ମା' ମାନେ ଶିଶୁକୁ କୋଳରେ ଧରି ଗୀତ ଗାଇ କ୍ଷୀର ପିଅାନ୍ତି । ଜହ୍ନମାମୁଁ ଗୀତ, କୋଇଲି ଗୀତ ପ୍ରଭୃତି ଗାନ କରନ୍ତି । ବର୍ତ୍ତମାନ ମଧ୍ୟ ତାହା ଘରେ ଘରେ ଦେଖାଯାଏ । କବି ତାର ଚିତ୍ର ନିମ୍ନମତେ ଦେଇଛନ୍ତି—

"ଘୋଷା କରି ଗୀତ        କୋକିଳ ପ୍ରାକୃତ        . ନାମକୁ ଗାଇ ତୋଷମନ
ଘେନି ସୁବର୍ଣ୍ଣ ଶାମୁକେ କ୍ଷୀର   ମାତା   ଜାନୁରେ କରାଇ ଶୟନ
ଘନଶ୍ୟାମକୁ । ଘନ ଘନ ପାନ କରାଇ ।" ଗୁ: ଭୂ: ।

ସାଧାରଣ ସ୍ତ୍ରୀଙ୍କ ବେଶବିନ୍ୟାସ

ସାଧାରଣ ପରିବାରର ସ୍ତ୍ରୀ ସ୍ୱର୍ଣ୍ଣଭୂଷଣ ପାଇଁ ବିଶେଷଭାବରେ ଲାଳାୟିତ । ମୂଲ୍ୟବାନ ପରିଚ୍ଛଦ, ସ୍ୱର୍ଣ୍ଣଭୂଷଣାଦି ବିଭବ, ଗୌରବର ପରିମାପକ ବୋଲି ବହୁବ୍ୟକ୍ତିଙ୍କର ଧାରଣା । ଏହି ଧାରଣା ରମଣୀଗଣଙ୍କ ହୃଦୟରେ ବସା ବାନ୍ଧି ରହିଛି । ଶିକ୍ଷିତା ମହିଳା ଜାନ, ନାକ ଫୋଡ଼ାଫୋଡ଼ି ନ କଲେ ମଧ୍ୟ, ମୂଲ୍ୟବାନ୍ ପରିଚ୍ଛଦ ଓ ଭୂଷଣର ଲୋଭ ସମ୍ବରଣ କରି ପାରେ ନାହିଁ । ଭଞ୍ଜଯୁଗର ବେଶଭୂଷା କଥା ଏକାବେଳକେ ଭିନ୍ନ । ସେ ଯୁଗର ସ୍ଥୂଳ ଚଳଣୀ, ବେଶଭୂଷା ଏଯୁଗ ଯୁବକ ଯୁବତୀଙ୍କ ରୁଚିର ପ୍ରତିକୂଳ ହୋଇ ପାରେ, ତାହା କିନ୍ତୁ ଯୁଗୋଚିତ ଥିଲା । କବି ଉପେନ୍ଦ୍ର ମାଳିନୀର ବେଶବିନ୍ୟାସ କିପରି ବର୍ଣ୍ଣନା କରିଛନ୍ତି ଦେଖନ୍ତୁ :—

"ଫୁଲଗୁଣା ମାଠଗୁଣା କରଇ ବିଚିତ୍ର ବେଣୀ, ନାସା ପୁଟନ୍ତିକ ପୁଟକେ ଥାଇ ଝଟକେ । ଲଙ୍କା ବସାନେ କଜ୍ଜଳ ନୟନେ ଦିଶେ ଉଜ୍ଜ୍ୱଳ ପଦ୍ମେ କି ଭ୍ରମର ଖେଳା ତେମନ୍ତ ତୋଳା ଏ । କର୍ଣ୍ଣେ ସୁନାକଣ୍ଠି ମାଳୀ ପ୍ରବାଳେ ହୋଇଛି ଝଳି ପଛକୁ ରୁଚିର ଫୁଲ ମାନସ ଭୁଲି ।      ×      ×
ବିଦମାଳୀ ପାଟକ୍ରିତ ତାଡ଼ରେ ଭୂଜ ପୀଡ଼ିତ କମଆଦି ଖଡ଼୍‌ବାଘ ହସ୍ତରେ ଶୋଭି ଏ । ବାମକରର ଅଙ୍ଗୁଳି ନି ସରି ମୁଦିରେ ଝଳି ଚରଣକେ ବଳାପଟେ ନାଦପ୍ରକଟେ ସେ । ପ୍ରପଦର କଂସା ମୁଦି ଶବଦେ ଧଇର୍ଯ୍ୟ ଖେଦି ବେଢ଼ରେ ଅଳତା ଚିତ୍ର ଅତି ବିଚିତ୍ର ସେ ।" ଇତ୍ୟାଦି ଲ: ବ: ।

ସାଧାରଣ ପରିବାର ମଧ୍ୟରେ ପ୍ରଚଳିତ ବେଶବିନ୍ୟାସ ଓ ବ୍ୟବହାର୍ଯ୍ୟ ପରିଚ୍ଛଦ ଭୂଷଣର ଅନ୍ୟତମ ଦୃଷ୍ଟାନ୍ତ ସ୍ୱରୂପ । ଲବଣ୍ୟବତୀ ଗୁ ୧୫, ପ:—୧୫ ଦ୍ରଷ୍ଟବ୍ୟ ।

ରାଜଜେମାଙ୍କ ବେଶବିନ୍ୟାସ

"ପୁଣି ମୁଖ ଗୃହିଁଲ, ଗୁଣି ସୁଖ ପାଇଲା, ପାଞ୍ଚିଲି ଚନ୍ଦ୍ର ଇଅ ଏହୁ । ଭାଟକ ନିନ୍ଦ ବେନି, ବିସ୍ମିତ ଗୃରି ଘେନି, କପୋଳ ବିମ୍ବେ ବିମ୍ବ ଗୃହିଁ ସେ । ରୂପସରି । ସ୍ୱାଦୁ ଠେକରି ପରି ରାଜ୍ଞ । ଝଳିକା ସୁମଣ୍ଡଣି ହେଜ । ଉରଂସ ଝିଲମିଲି ମାଳୀ ଏମନ୍ତ ଝଳି ଯେମନ୍ତ ଦୋଣା ଦ୍ୱାର ପାଳ ମେ । ମୋତି-ସୀମନ୍ତ ବଇଜୟନ୍ତୀ ବିରାଜନ୍ତି ସିନ୍ଦୁର ଚନ୍ଦନ କସ୍ତୁରୀ । ଏ ବଳକେ ଶର୍ଦ୍ଧିତ ଚାପକେ କି ବଚନ ସ୍ୱଭାବେ ଦିଶେ ଚନ୍ଦପରି ସେ । ମଲ୍ଲୀକଢ଼ୀ । ଶିଖର ଜଳସ ସୂଢ଼ଲେ । ନାସା ମୋତି ରୋହିଣୀ କୋଳେ । ନୀଳ ଶୈଳ ତମାଲ ବନ ଗହଳ ସ୍ଥଳ କୁଚ-ପ୍ରବାଦ୍ ତୂଳେ ମିଳେ ସେ ।" ଇତ୍ୟାଦି । ଗୁ ୧୩, କୋ: ବ୍ର: ସୁ: ।

## ଓଷା, ପୂଜା ଉପାସ୍ନ

ଓଡ଼ିଶାବାସୀଙ୍କ ଦେବଦେବୀ ବିଶ୍ୱାସ ପୁରାଣ ଓ ଇତିହାସ ପ୍ରସିଦ୍ଧ । କେତେକ କଥା ଶାସ୍ତ୍ରସମ୍ମତ ହୋଇ ପାରେ, କେତେକ ହୋଇ ନ ପାରେ; ତନ୍ମଧ୍ୟରେ ଆଧ୍ୟାତ୍ମିକ ଧାରଣାଯୋଗ ପ୍ରଚ୍ଛନ୍ନ ଭାବରେ ଧୀରେ ଧୀରେ ଚେଳି ରହିଥିବାରୁ, ସେଥିରୁ ବୈଜ୍ଞାନିକ କାରଣ ଖୋଜି ବସିବା ଅନାବଶ୍ୟକ । ପୁରୁଷ ଅପେକ୍ଷା ସ୍ତ୍ରୀର ଏଥିଁ ବିଶ୍ୱାସ, ଭୟ, ଭକ୍ତି, ଦୃଢ଼ତର । ସମ୍ପଦ, ବିପଦ, ଅଭାବ, ଅଭିଯୋଗ, ବିବାହ, ବ୍ରତ, ଅନାବୃଷ୍ଟି, ଅତିବୃଷ୍ଟି, ଜନ୍ମ, ମୃତ୍ୟୁ ପ୍ରତ୍ୟେକ ସମୟରେ କଷ୍ଟ ଖଣ୍ଡନ ପାଇଁ ସେମାନେ ଦେବ-ଦେବୀଙ୍କଠାରେ କିଛି ମାନସିକ କରି, ଦୃଢ଼ ବିଶ୍ୱାସ ରଖି ଯୋଡ଼ ହସ୍ତରେ, ନତମସ୍ତକରେ ସ୍ୱଚ୍ଛ ଓ ପବିତ୍ର ହୃଦୟରେ ଯାବଜ୍ଜୀବନ ପୂଜା ଆରାଧନା କରି କରି କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅନ୍ତି । ଲାବଣ୍ୟବତୀଙ୍କ ସହଚରୀବୃନ୍ଦ ସେହିପରି ଲାବଣ୍ୟବତୀଙ୍କ ହିତ କାମନାରେ—

"ଚଣ୍ଡୀ କଷ୍ଟ ଖଣ୍ଡନେ ଚଣ୍ଡୀ ମନାସି ମନେ

ଗ୍ରହଶାନ୍ତି କି ବିସ୍ମରିଲେ ।"

ଦେବଦେବୀଙ୍କଠାରେ ରମଣୀମାନଙ୍କ ବିଶ୍ୱାସ ଯେ ଅଟଳ, ତାହା କବି ନିଜ ଗ୍ରନ୍ଥରେ ଏକାଧିକ ବାର ପ୍ରକାଶ କରିଛନ୍ତି । ଋଷିମାନଙ୍କ ଅନୁରୋଧରେ କିଶ୍ୱାସିକା ଚଣ୍ଡୀ ଚନ୍ଦ୍ରଭାନୁଙ୍କୁ କାବେରୀକୂଳରେ କ୍ରୀଡ଼ାରତ ଥିବାବେଳେ ମାୟାରେ ହରଣ କରି ନେଇଯିବାରୁ, ସେ ଲାବଣ୍ୟବତୀଙ୍କଠାରୁ ସହସା ବିଚ୍ଛିନ୍ନ ହେଲେ । ଲାବଣ୍ୟବତୀଙ୍କ ବିଚ୍ଛେଦଦୁଃଖ ସୀମାତୀତ ହେବାରୁ, ସହଚରୀମାନେ "ଇଷ୍ଟ-ଦେବୀଙ୍କି ଉଣ୍ଡି କରାଇଲେ । "ବିବୁଧ ଶାପୁଁ ବିଚ୍ଛେଦ ଜାଣିଲେ ।" ଲା: ବ: । କୋଟିବ୍ରହ୍ମାଣ୍ଡସୁନ୍ଦରୀରେ, 'ଜଗନ୍ନାଥ ମହିମା' କୀର୍ତ୍ତନ କରୁ କରୁ କବି କହନ୍ତି—

"ଶ୍ରୀମହାପ୍ରସାଦ-ଶବ୍ଦ ପଦ ଘଣ୍ଟା ଘୋଷ,
ଭକ୍ଷଣେ ଶ୍ରବଣେ ଯେ କଲ୍‌ମଷ ବିଷ ନାଶ ହେ ॥"

ଏପରି ବିଶ୍ୱାସ ଉତ୍କଳବାସୀଙ୍କ ହୃଦୟରେ ସେ ସମୟରେ ଥିଲା । ବର୍ତ୍ତମାନ ମଧ୍ୟ ଅଛି । ତନ୍ତ୍ର, ମନ୍ତ୍ର, ଉପାସ୍ନ, ବଶୀକରଣ ଉପାସ୍ନ ଭଞ୍ଜଙ୍କ ସମୟରେ ବହୁତ ଥିଲା । ତଦୁପଲକ୍ଷେ କବି କହନ୍ତି—"କେତେ ବିଶ୍ୱକର୍ମୀ କାମିଣେ ମୋହନ ପ୍ରତିମା ସେ ବଶ ହେବାର । ଗୁପତ ମନ୍ତ୍ରର ଆମ୍ଭଠାରେ ଅଛି ଦେବା ଜପ କରୁ କୁମାର । ଫଳଦ । ଏମନ୍ତ ପ୍ରକାରେ ହୋଇବ ।" କୋ: ବ୍ର: ସୁ: । ଅର୍ଜ୍ଜୁନଙ୍କୁ ଆୟତ୍ତ କରିବା ପାଇଁ ସତ୍ୟଭାମା ସୁଭଦ୍ରାଙ୍କୁ "ଶିଖାଇଲେ ମନ୍ତ୍ର କବାଟ ଫେଡ଼ନେ କରିବାକୁ ପୁଂସ ରଞ୍ଜନ । ସ୍ୱହସ୍ତେ ଦେଲେ ସେ ଧୂଳି କ୍ଷେପଣକୁ ଯେଉଁବାକୁ ଦେଲେ ଅଞ୍ଜନ । ଛା ୧୦, ସୁ: ପ: । ଦେବାଦେବୀ ଦର୍ଶନ ସମୟରେ କେତେକ ସାମାଜିକ ବିଧି ପାଳନ କରାଯାଏ । ସେଥିପ୍ରତି ଦୃଷ୍ଟି ରଖି ଲାବଣ୍ୟବତୀଙ୍କ ରାମେଶ୍ୱର ମନ୍ଦିରରେ ଶିବଦର୍ଶନ ସମୟରେ ମା ମୁହିଁରେ ଦୁହିତାକୁ ଉପଦେଶ ଛଳରେ କବି କହନ୍ତି—"ପିତା ପୁତ୍ର ପରି ମାତା ଦୁହିତାର ଏକ ସଙ୍ଗେ ଶିବ ଦର୍ଶନ । ଦୋଷ ବୋଲି ଅଛି ଅଶେଷ ପୁସ୍ତକେ ଏ ବଚନ ଶିକ୍ଷ ଯେସନ ଛା ୭, ଲା: ବ: । ଓଷା, ବ୍ରତ, ସାମାଜିକ ବିଧି ହିସାବରେ ଥିଲା, ଆଜିପର୍ଯ୍ୟନ୍ତ ଚାଲିଛି । ଷଷ୍ଠୀଓଷା, ଦୁତୀବାହନ ଓଷା, ଅନନ୍ତବ୍ରତ, ସୁଦଶାବ୍ରତ, ଗଣେଶପୂଜା, ସରସ୍ୱତୀପୂଜା ଇତ୍ୟାଦି । ସଂହାଳର

ପଞ୍ଚମହୃଷୀ ଉଦବ୍ୟାକୁମାରୀ ନାମକାରେ କଦ୍ଧାର ସଦ୍ଧତ ନାନା ଓଷା, ବ୍ରତ, ପୂଜା କଲେ । ଯଥା ସମୟରେ ତାଙ୍କର ମନସ୍କାମନା ପୂର୍ଣ୍ଣ ହେଲା । "ଦଦ୍ୟୁମ୍ବିତା ନାମେ ପଞ୍ଚମହୃଷୀ........

ପଞ୍ଚଶରସମେ ପଞ୍ଚ ସୁତ କଲେ ଜାତ ।
ଉଦବ୍ୟାକୁମାରୀ ପ୍ରାପତେ କଲେ ନାନାବ୍ରତ ଯେ ।
ଚୈତ୍ର ମଙ୍ଗଳ ବାରରେ ଆରମ୍ଭି ପୂଜାକୁ
ପଞ୍ଚମ ପାଳିରେ ତୋଷ କଲେ ଗିରିଜାଙ୍କୁ ।" ଲ: ବ: ।

ଏକାଧିକ ବାର ଓଷା, ବ୍ରତ ପ୍ରଭୃତିର ଉଲ୍ଲେଖ ଅଛି । "ଓଷା ପାଳି ମୋ ଭେଟକୁ ପୂଜୁଥିବ ଗଉରୀ ।" ଚ: ଚନ୍ଦ୍ର: । ଲୋକ ସମାଜର ବିଶ୍ୱାସ, ପୂଜା ପ୍ରଭୃତିକୁ ପାଶ୍ଚାତ୍ୟ ଲେଖକ ଆଡ଼ିସନ୍ ବିଶେଷ ଭାବରେ ସମର୍ଥନ କରନ୍ତି (ସ୍ପେକ୍‌ଟେଟର୍)

ସତୀପ୍ରଥା

ସାମାଜିକ ଚଳଣୀ ଭାବରେ ଭାରତରେ ସତୀପ୍ରଥା ବହୁଦିନରୁ ପ୍ରଚଳିତ ଥିଲା । ପତ୍ନୀ ପତିକୁ ଦେବତାଜ୍ଞାନରେ ସେବା କରେ, ପତି ପତ୍ନୀ—କାୟା ଛାୟା ରୂପେ ଚଳନ୍ତି । ଦୁହେଁ ଅଭିନ୍ନ, ଜଣେ ଅନ୍ୟର ଅର୍ଦ୍ଧାଙ୍ଗ ଅର୍ଦ୍ଧାଙ୍ଗିନୀ—ଏହି ବିଶ୍ୱାସ ଦୃଢ଼ଭାବରେ ଦୁହିଁଙ୍କ ହୃଦୟରେ ସତତ ଜାଗରୂକ ଥିଲା । ପତିର ସେବାରେ ପତ୍ନୀର କେବଳ ଗତି ମୁକ୍ତି ବୋଲି ବିଶ୍ୱାସ ଥିବାରୁ ସେ ତାହା କରି ଅଖଣ୍ଡ ଶାନ୍ତି, ତୃପ୍ତି ପାଇଥାଏ । ଏହି ଦୃଢ଼ ବିଶ୍ୱାସ ଯୋଗୁଁ ପତିର ମୃତ୍ୟୁ ପରେ ପତ୍ନୀ ବଞ୍ଚିରହିବା ବୃଥା, ଅକାରଣ ବୋଲି ସେ ମନେ କରେ । ସେହି ଦୃଢ଼ ବିଶ୍ୱାସ ଯୋଗୁଁ ସେ ସ୍ୱଇଚ୍ଛାରେ ଅଗ୍ନିରେ ନିଜକୁ ବିସର୍ଜନ ଦିଏ । ଏହି ସତୀପ୍ରଥା ବହୁଦିନରୁ ଥିଲା, ବହୁ ଦିନରୁ କବିମାନେ ନିଜ ଗ୍ରନ୍ଥରେ ତାହା ଚିତ୍ରିତ କରି ଆସିଛନ୍ତି । "ଜଳ ଜଳ ଅଗ୍ନି ଦ୍ୱିଗୁଣ ଜଳରେ ପାଉ ଅଭାଗିନୀ ସ୍ଥାନ ତୋ ଅଙ୍କେ ।" ଏହି ମର୍ମରେ ବଙ୍ଗଳାର ବିଖ୍ୟାତ କବିମାନେ ଗାନ କରନ୍ତି । ଉପେନ୍ଦ୍ର ତାହା ଚରସ୍ମରଣୀୟ କରିବାକୁ ଯାଇ କହନ୍ତି—"ବିହ୍ୱଳନ୍ତି ଯେ କୁଳକୁଳ କି ଅବା ସେ ଆଳୀ ଅଛି ପତ୍ନୀ ସଙ୍ଗେ ପତି ସନ୍ତୁଳିକି" ଛ ୪୫, ବୈ. ବି. । ଅନ୍ୟତ୍ର— "ବହ୍ନିରେ ପଶିବା ଯେଣୁ ସ୍ୱାମୀର ସଙ୍କେତ ଯେ ।" ବୈ: ବି: ।

ସତୀପ୍ରଥା ଲର୍ଡ ବେଣ୍ଟିଙ୍କଙ୍କ ସମୟରେ ଉଠିଗଲା । ସେ ୧୮୨୯ ଖ୍ରୀଷ୍ଟାବ୍ଦରେ ସତୀପ୍ରଥା ଲୋପ ପାଇଁ କଡ଼ା ଆଇନ କଲେ । ୧୮୩୭ ଖ୍ରୀଷ୍ଟାବ୍ଦ ଭିତରେ ତାହା ବନ୍ଦ ହେଲା । ରାଜା ରାମମୋହନ ରାୟ ସତୀପ୍ରଥା ଲୋପ ପାଇଁ ଯଥାଯଥ ସାହାଯ୍ୟ ଦେଇଥିଲେ ।

ବାଣିଜ୍ୟ

ଓଡ଼ିଶାବାସୀଙ୍କର ଦୂରଦେଶ ସହିତ ବୋଇତ ବାଣିଜ୍ୟ ଥିଲା । ଏହି ବୋଇତଅଳମାନେ ଦୂରଦେଶ ସହିତ ବନ୍ଧୁତ୍ୱ ସ୍ଥାପନ କରୁଥିଲେ, ଓଡ଼ିଶାର ପଣ୍ୟଦ୍ରବ୍ୟ ସେଠାରେ ବିକ୍ରୟ କରି, ମଣି, ମୁକ୍ତା ନାରିକେଳ, ମସଲା ପ୍ରଭୃତି ଆଣୁଥିଲେ । ବାଣିଜ୍ୟଦ୍ୱାରା ଯେଉଁମାନେ ପ୍ରଚୁର ଅର୍ଥ ଅର୍ଜ୍ଜନ କରି ସମ୍ପତ୍ତିଶାଳୀ ଥିଲେ, ସେମାନଙ୍କୁ ସାଧବ କୁହାଯାଉଥିଲା । ଏହି ସାଧବ, ସାଧବବୋହୂ କଥା ଓଡ଼ିଶାର ଘରେ ଘରେ ଯୁଗ ଯୁଗ ଧରି ପଢ଼ାଶୁଣା ହୋଇଛି । ପ୍ରଧାନତଃ ଓଷା କଥା ଯାହା ଅଛି, ସେଥିରେ ସାଧବ, ସାଧବବୋହୂଙ୍କ ନାମ ଧାମ, ଚରିତ ଗୁନ୍ଥା ହୋଇ ରହିଛି । 'ଖୁଦୁରୁକୁଣୀ' ଓଷା କଥାରେ 'ତଅପୋଇ' ଚରିତ ଅତ୍ୟନ୍ତ ହୃଦୟହାରକ ବୋଧହୁଏ । ଓଡ଼ିଶାର ବିଭବ, ଦୂରଦେଶ ଭ୍ରମଣ, ସମୃଦ୍ଧି ପ୍ରଭୃତି

ସାଧବମାନଙ୍କ ବାଣିଜ୍ୟଯାତ୍ରାକୁ ଧରାଯାଏ । କବି ପ୍ରଚଳିତ ବାଣିଜ୍ୟରୀତି ନିଜ ଗ୍ରନ୍ଥରେ ଅଙ୍କନ କରି ସେ କାଳର ବାଣିଜ୍ୟଯାତ୍ରା ଓ ସ୍ତ୍ରୀସ୍ଥ କବିତାକୁ ମାର୍ଜିତ କରି ଅଛନ୍ତି । ବୋଇତ କୂଳରେ ଲାଗିଲେ ତତ୍କାଳୀନ ସାମାଜିକ ପ୍ରଥା ଅନୁସାରେ ସାଧବବୋହୂ ଓ ସାଧବ କନ୍ୟାମାନେ ବିଦେଶାଗତ ପିତା, ଭର୍ତ୍ତା ଓ ଭ୍ରାତା-ମାନଙ୍କୁ ବନ୍ଦାପନା କରି ଘରକୁ ନେଉଥିଲେ ।

"ବହିତ ଲାଗିଲା ଯାଇ ସିଂହଳ ଦ୍ୱୀପରେ
ସାଧବ ଯୁବତୀଗଣ ଅତି ପ୍ରମୋଦରେ
ଗଲେ ବହିତ ବନ୍ଦାଇ
ଅର୍ଘ୍ୟଥାଳୀମାନ କରେ ହୁଳହୁଳି ଦେଇ ।" ଲା. ବ. ।

ବୋଇତଅଳି ରତ୍ନାକରର ବୋଇତ କୂଳରେ ପହଞ୍ଚିବାକ୍ଷଣି, ତାର ଜାୟା, ଭଗିନୀ ମେଘମାଳା ପ୍ରଭୃତି ରତ୍ନାକରକୁ ବନ୍ଦାପନା କରି ପାଛୋଟି ନେଇଥିଲେ । ବୋଇତ ବ୍ୟବସାୟ ଅତ୍ୟନ୍ତ ପ୍ରମାଦର କଥା ଥିଲା । ଝଡ଼, ତୋଫାନ, ଜଳଦସ୍ୟୁ, ଶତ୍ରୁ, ଆକସ୍ମିକ ବିପଦ ପ୍ରଭୃତିର ସମ୍ମୁଖୀନ ବେଳେ ବେଳେ ହୋଇ ପାରେ । ସେଥିଯୋଗୁଁ ସାଧବ ଓ ସାଧବ ପରିବାରର ସମସ୍ତେ ନିରାପଦରେ ବୋଇତର ଗତାଗତ ପାଇଁ ପରମେଶ୍ୱରଙ୍କ ଠାରେ ପ୍ରାର୍ଥନା କରନ୍ତି ।

"ଅତି ଦରିଦ୍ରେ ମୁଁ ବହିତ ବଣିଜ କରିଛୁ ଉପାୟ ବଳରେ
ଭଲ ମନ୍ଦ ଅଛି କି କପାଳରେ
ଦଇବ ଯେ ବୁଝି ସେ ତୋତେ ଗୋଚର ଦୟାରେ ଲଗା କୂଳରେ ।" ଲା: ବ: ।

ଅନ୍ୟତ୍ର—"ବାର ବୃତ୍ତି ମଧ୍ୟେ ମୋର,
ବହିତ ଫିଟାଇ ଧନ କରି ନେଲି ଢୁର,
ବାଣିଜ୍ୟ ବିହୀନେ କେହ୍ନେ ଜୀବନ ପୋଷିବି ।" ବୈ: ବି: ।

ସାଧାରଣତଃ ବଣିକାରମାନେ ଐଶ୍ୱର୍ଯ୍ୟଶାଳୀ । "ବଣିକାର ହସ୍ତ ସ୍ୱର୍ଗ ପ୍ରଗାଢ ।" ଇତ୍ୟାଦି,
ବୈ: ବି: ।

— —--

# ପ୍ରକୃତିଚିତ୍ର

> "Nature with equal mind,
> Sees all her sons at play,
> Sees man control the wind,
> The wind sweep man away."
>
> —Mathew Arnold.

## ମନୁଷ୍ୟ ଓ ପ୍ରକୃତି

ମନୁଷ୍ୟସମାଜ ପ୍ରାକୃତିକ ଉପାଦାନରେ ଗଠିତ । ପ୍ରାକୃତିକ ଦୃଶ୍ୟ—ବନ, ପର୍ବତ, ନଦୀ, ସମୁଦ୍ର, ସରୋବର, ପ୍ରଭାତ, ସନ୍ଧ୍ୟା, ରାତ୍ରି, ମୃଗତୃଷ୍ଣା, ଝଡ଼ବୃଷ୍ଟି, ପଶୁ ପକ୍ଷୀ ଇତ୍ୟାଦି ସହିତ ମନୁଷ୍ୟର ଭ୍ରାତୃ-ପ୍ରେମ ସମ୍ପର୍କ ରହିବା ସ୍ୱାଭାବିକ । ନିରକ୍ଷର ଏହି ଦୃଶ୍ୟାବଳୀ ଦର୍ଶନ କରି କ୍ଷଣିକ ଆନନ୍ଦ ଅନୁଭବ କରେ; ଦରିଦ୍ର ସେଥିରୁ ଆହାର୍ଯ୍ୟବସ୍ତୁ ସଂଗ୍ରହ କରିଥାଏ; ବଣିକ୍ ସେଥିରୁ ପଣ୍ୟ ଦ୍ରବ୍ୟ ନିର୍ବାଚନରେ ନିଜକୁ ନିୟୋଜିତ ରଖେ; ଦାର୍ଶନିକ ତତ୍ତ୍ୱ ସନ୍ଧାନରେ ସମୟ ଅତିବାହିତ କରେ; ବୈଜ୍ଞାନିକ ସେଥିରୁ ନୂତନ ତଥ୍ୟ ଆବିଷ୍କାର କରି ସମାଜକୁ ଉପହାର ଦିଏ; କବି ନିଜର ଅସୀମ ଜ୍ଞାନ, ଧୀଶକ୍ତି ଅନୁଭୂତି ଓ ବସ୍ତୁ-ସମୂହକୁ ଦୁର୍ଲ୍ଲଭ-କବିତା-ଛନ୍ଦୋବନ୍ଧରେ ପ୍ରାଣବନ୍ତ କରି ମନୁଷ୍ୟ ସମାଜ ସମ୍ମୁଖରେ ପଞ୍ଚମ ତାନରେ ଦିଗନ୍ତ ମୁଖରିତ ଓ ମଧୁମୟ କରି ଗାନ କରିଥାଏ । କବିର ଗାନ, ମୂର୍ଖ ପଣ୍ଡିତ, ତରୁଣ ତରୁଣୀ, ବୃଦ୍ଧ, ଶିଶୁ, ତ୍ୟାଗୀ ଯୋଗୀ ସମସ୍ତଙ୍କର ହୃଦୟ ସ୍ପର୍ଶ କରି ଅବଚେତନା ଆନୟନ କରେ; ସେତେବେଳେ ସମସ୍ତେ ବୁଝନ୍ତି— ପ୍ରକୃତି ଯଥାର୍ଥରେ ରହସ୍ୟମୟ ! ସେହି ରହସ୍ୟଭେଦ କରିବା ପାଇଁ ଦାର୍ଶନିକ, ବୈଜ୍ଞାନିକ, କବି ପ୍ରଭୃତିଙ୍କର ଯୁଗ ଯୁଗ ଧରି ପ୍ରଗାଢ଼ ପ୍ରୟାସ ଚାଲିଛି ଚାଲିଥିବ । କବି ଉପେନ୍ଦ୍ର ଭଞ୍ଜ ପ୍ରକୃତିର ଲୀଳାଭୂମି ଗୁମୁସରର ବନ, ପର୍ବତ, ନଦୀ, ନିର୍ଝରିଣୀ ପରିବେଷ୍ଟିତ ନିଭୃତ ପ୍ରାଙ୍ଗଣରେ ବସି ଯେଉଁପରି ପ୍ରକୃତିଚିତ୍ରଣ କରିଛନ୍ତି ତାହାର ବିଶଦ ଦୃଷ୍ଟାନ୍ତ ଦେବା ବର୍ତ୍ତମାନ ଅନାବଶ୍ୟକ । ନମୁନା ସ୍ୱରୂପ କେତୋଟି ମାତ୍ର ନିମ୍ନରେ ପ୍ରଦତ୍ତ ହେଲା:—

( ମାନବ ଓ ପ୍ରକୃତି ଯେପରି ଏକ ପର୍ଯ୍ୟାୟଭୁକ୍ତ )

ଦୃଷ୍ଟାନ୍ତ—ନାୟିକାକୁ ପ୍ରଭାତରୂପେ କଳ୍ପନା କରି କବି ନିମ୍ନମତେ କହନ୍ତି—

"ଏକାଳେ ପୂର୍ବ କୁମର କରି
    ପ୍ରାତଃ ସ୍ମରଣ ବାଳକୁ ଛବି
ପାଇ ଓଷ୍ଠେ ବାଳ-ଅରୁଣ ଲକ୍ଷ୍ୟକୁ
    ନେଦେ ସ୍ପୃଷ୍ଟେ କଣ୍ଟକିତ
ଅମ୍ବର ମଣ୍ଡଳନାହ । ଅଳେକେ ସୁଖ ହୃଦ୍ୟାଚ ।" କୋ: ବ୍ର: ସୁ: ।

ବସନ୍ତକାଳର ପ୍ରଶସ୍ତରୂପେ ସୀତାଙ୍କୁ ବର୍ଣ୍ଣନା କରି କବି କହନ୍ତି—

"ବଞ୍ଜୁଳ ବନେ ମଞ୍ଜୁଳବତୀ ସୀତା ଏକାଳ ଅବସ୍ଥା ଧରି
ବିକଶିଲେ ମଲ୍ଲୀ, ଫୁଟେ ତନୁଚମ୍ପା ମଦନ ରସରେ ପୂରି ସେ,
ବିଧୁତ । ବିଧୁମୁଖ ଧୂଳି ମ୍ଳାନ ସେ,
ବୃଦ୍ଧି ହେଲା ମାନସିକ ଅନ୍ତଃଶସ୍ତ୍ର ସଯୋଗ ପାଣି ନଳିନ ସେ ।"
ବୈ: ବି: ।

ନାୟିକାକୁ ସରୋବରରୂପେ ଚିତ୍ରଣ କରି କବି କହନ୍ତି—

"ଲାବଣ୍ୟ ସରସୀ ଶୋଭା ବଢ଼ାଇଲାଣି ସମ୍ପୂର୍ଣ୍ଣ ଗୁଣ ଗଭୀରେ
ଲପନ ନଳିନ ସୁଭୁରୁ ମୃଣାଳ ସମ୍ଭାଳ ଭଉଁରୀ ନାଭିରେ ।" ର: ହା:

ନାୟିକାକୁ ଏକ ପୁଷ୍ପିତା ଲତା ସ୍ୱରୂପ କଳ୍ପନା କରି କବି ନିମ୍ନମତେ ବର୍ଣ୍ଣନା କରିଅଛନ୍ତି—

"ନବ ବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଷୋଳକାନ୍ତି ଫୁଲ ।" ଲା: ବ: ।

ମନୁଷ୍ୟର ହର୍ଷ ବିଷାଦ ସହିତ ପ୍ରକୃତିର ସହାନୁଭୂତି ଯଥା—

"କୁମୁଦ ବିକାଶ ତୁଟି ତୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ
ହରସ ବିରସ ପାଲଟା ପାଲଟି ମଧୁଲିଟ, ବିଟ କି ସେ ? କୋ: ବ୍ର: ସୁ: ।

## ନାରୀ ଓ ପ୍ରକୃତି

ରସଲେଖାରେ ନାୟିକାର ଅଙ୍ଗପ୍ରତ୍ୟଙ୍ଗ ବର୍ଣ୍ଣନା ଅତ୍ୟନ୍ତ ବିଚିତ୍ର । ସେଥିରୁ ନେଇ ବର୍ଣ୍ଣନା ନମୂନା ସ୍ୱରୂପ ଦେଖନ୍ତୁ—

କିଏ କୁରଙ୍ଗ କି ଅବା ତୁରଙ୍ଗ, ଏଣିକ ତେଣିକ କରଇ ସୁରଙ୍ଗ ।
କିଏ ନବ ବିକଚ ପଦ୍ମଦଳ, ପଡ଼ି କାଳିନ୍ଦୀ ଜଳେ ଟଳ ଟଳ ।
କିଏ ସୁଧାସିନ୍ଧୁରୁ ଅବତରି, ହୋଏ ତରଳ ଗରଳ ଲହରୀ ।
କିଏ ଗଙ୍ଗା କଲ୍ଲୋଳେ ବାତଯୋଗେ, ନୀଳ ଉତ୍ପଳ ଛଳେ ଦୁଇ ଦିଗେ ।
କିଏ ସୁଧାମଧ୍ୟରେ କରେ ନାଟ, ବାଦ ଆରମ୍ଭି କେଳି-ଖଞ୍ଜରୀଟ ।
କିଏ ପଦ୍ମେ ଉନ୍ମତ୍ତ ବସେ ଭ୍ରମର, ଦୃଷ୍ଟି ମୋହିତ ହୋଇବେ ଅମର ।
ର: ଲେ: ।

## ଛଅଋତୁ

ଗ୍ରୀଷ୍ମ "ଏହି ସମୟରେ ସୁନ୍ଦରୀ ସ୍ୱମୁଖେ ପ୍ରଶ୍ନମଞ୍ଜୁଳା ଜଣାଇଲା ।
ଅତି ମଧୁର ମଧୁଋତୁ ପ୍ରବେଶ କିଛି ଦିନ ହେଲା ହୋଇଲା ।
ଶ୍ରବଣା କରି ନାହିଁ ନବ କାମିନୀ ।
ପିକ ବଚନ ପୁନଃ ପୁନଃ ପ୍ରକାଶ କଲାକ ଅନ୍ଧାର ଯାମିନୀ ।"

"ମଳୟ ଶିଖରୀ ଶିଖ ସ୍ପର୍ଶ କରି ବହିଲାକ ମନ୍ଦ ସମୀର ।
ସୁମନାଙ୍କ ବାସ ସ୍ପୃହି ନେବଟି ବୋଲି ବନ୍ଦୀଲାକ ଭ୍ରମର ।
କେଶର । କେଶରେ ହେଲେକ ମଞ୍ଜୁଳ ।
କେଶରେ ମଣ୍ଡନ କରିବା ଭଲରେ ଫୁଟିଲେକ କେତେ ବଞ୍ଜୁଳ ।"

"ମଲ୍ଲୀ ମାଧବୀ ମକରନ୍ଦ ମାଧବୀ ହେଲେକ ବାନ୍ଧବୀ କାନନେ ।
ତୃଷାର ନାଶ ବୃଦ୍ଧି ହାସ ପ୍ରକାଶ କଲେକ ପଙ୍କଜ ଆନନେ ।
ହେଲାକ । ଚର୍ଚ୍ଚିଷ ପ୍ରକଟ କଣ୍ଟକେ,
ଅଭନୁ ଫୁଲର ବଶିଖ କାର୍ମୁକେ ଯେକ ତର୍ଜିଲାକ କାମୁକେ ।"
ଇତ୍ୟାଦ । ଗ୍ରୀ, ଲ: ବ: ।

ପୁଷ୍ପପୁର ରାଜକୁମାର ନାକଟଙ୍କୁ କୋଟିବ୍ରହ୍ମାଣ୍ଡସୁନ୍ଦରୀ 'ଉପାସ୍ୟ-ଉପାଧିକା-ଉପାଧାୟୀ' ଦ୍ୱାରା ପ୍ରେମପତ୍ର ପ୍ରେରଣ କଲା । ଗ୍ରୀଷ୍ମକାଳ ହେବା ହେତୁ ସେ ଉପବନରେ ବସିଥିବାବେଳେ ଜବଙ୍କ ଜାବଲ୍ୟ ବର୍ଣ୍ଣନା:—

"ଦେଖିଲେ ଆରାମ ଅତି ଅଭିରାମ ଯେ ଦେଖିବ ଏହୁ ପ୍ରଶାନ୍ତ ।
ମନରୁ ଉପୃତ୍ତି ରତିକାମ ମୂର୍ତ୍ତିମନ୍ତେ କି ବସି ହେଉଛନ୍ତ ।
କୋକିଳ । ଗାୟକ ଉଚେ ଗାଏ ଗୀତ ।
ଝିଙ୍କାରୀ ଝଙ୍କାର ଖଞ୍ଜରୀଟ ପ୍ରାନ୍ତହତ ସୁବାଦ୍ୟରେ ବାଦିତ ॥

ଶୁକ ଭରଦ୍ୱାଜ ବେନକୁଳ ଦ୍ୱିଜ ଶ୍ରୁତି ମଞ୍ଜୁବାକ୍ୟ ଉଚ୍ଚାର ।
ମଲ୍ଲୀଜଡ଼ୀ ଶଙ୍ଖ ଅସଂଖ୍ୟ ଅନେକ କନକ ମଧୁସ୍ରି ମାଧୁରୀ ।
ମଧୁପ । ଚୁମ୍ବନେ ଧ୍ୱନି କରେ ଜାତ ।
ମରୁତ ଅଧିକାରୀ ଯେକ ସୁବାସ ରଙ୍ଗିଣୀଠାରୁ ଗତାଗତ ।"
କୋ: ବ୍ର: ସୁ: ।

ବସନ୍ତ

"ବର୍ଣ୍ଣ ଅବ୍ୟକ୍ତରୁ ହ୍ରାସିତ କନକ-କଙ୍କଣ ନିଃସ୍ୱନେ ଦର୍ଶିଲେ ।
ମତ୍ତ ଭୃଙ୍ଗଶ୍ରେଣୀ ବାଜଣୀ କଙ୍କଣୀ ରଣରଣ ପଦ ଘୋଷିଲେ ।
ଏତିକି । ମାଜି ରହିଲା ବିବେଚନା,
ପିକ କୁହୁ କୁହୁ ଲେକ ହୁଁ ହୁଁ କଲେ ଉଚ୍ଚବାଚ ବାକ୍ୟ ରଚନା ।

"ବିକାଶ ହୋଇଲେ କିଂଶୁକ ସାଧୁ ଯେ ପୂର୍ବ ବଭୂତିକି ତେଜିଲେ
କୁରବକ କରିତ କାଷ୍ଠ କଣ୍ଟୋରାଙ୍ଗ ଉତ୍ଫୁଲ୍ଲ ପୁଲକ ଭଜିଲେ
ତା ଦେଖି । ଦୀନ ହୁଷ୍ଟ ପୁଷ୍ଟ ଲଭିଲେ ।
ଉଡ଼ି ପଡ଼ିଲା ବିରାଜମାନ ରଜ ବଣେ କେତେ ଅଙ୍ଗ ଶୋଭିଲେ ।"
ଇତ୍ୟାଦ । ଗ୍ରୀ, କୋ: ବ୍ର: ସୁ: ।

କାଳିଦାସଙ୍କ ବସନ୍ତ ବର୍ଣ୍ଣନା

"ଦ୍ରୁମାଃ ସପୁଷ୍ପାଃ ସଲିଲଂ ସପଦ୍ମଂ
ସ୍ତ୍ରିୟଃ ସକାମାଃ ପବନଃ ସୁଗନ୍ଧଃ ।
ସୁଖାଃ ପ୍ରଦୋଷାଃ ଦିବସାଶ୍ଚ ରମ୍ୟାଃ
ସର୍ବଂ ପ୍ରିୟେ ଚାରୁତରଂ ବସନ୍ତେ ।"

ଋତୁମାନଙ୍କ ମଧ୍ୟରେ ବସନ୍ତଋତୁ ସର୍ବାପେକ୍ଷା ମନୋରମ । ବୃକ୍ଷ ପୁଷ୍ପବାନ୍ ହୁଏ, ବାୟୁ ସୌରଭ-ପୂର୍ଣ୍ଣ, ସରୋବର ପଦ୍ମପୂର୍ଣ୍ଣ ହୁଏ । କାମିନୀମାନେ କାମାତୁରା ହୁଅନ୍ତି । ସନ୍ଧ୍ୟା, ପ୍ରଭାତ, ଦିବସ ସବୁ ଅତ୍ୟନ୍ତ ସୁଖଦ ବୋଧହୁଏ । ଉପେନ୍ଦ୍ର ଭଞ୍ଜଙ୍କ ନିମ୍ନୋକ୍ତ ବସନ୍ତ ବର୍ଣ୍ଣନା ତୁଳନୀୟ—

"ଅତି ରସମୟ ବସନ୍ତ ସମୟ ବିଚାରି ପ୍ରମେୟ ତାହାର
ମିତ ଅନଙ୍ଗଙ୍କୁ ପ୍ରବଳ କରାଇ ଆଚରି ଚର୍ଚ୍ଚରୀ ବିହାର
ଆଗତେ । ଆରୋହିଲା ନାଗେଶ୍ୱରକୁ ।
ଋତୁରାଜପଦୁଁ ସେ ରଜ ଯେନିଲା ବୃଦ୍ଧି ପ୍ରଫୁଲ୍ଲ କେଶରକୁ ॥

ଋତପତି ସୁତ-ଆବରଣ ମଧ୍ୟେ ସାଧ୍ୱୀଗୁଣ ଯେନି ପଶିଲା
ନବପୁଷ୍ପବତୀ ସେବତୀ ସଙ୍ଗତେ ରସି କ୍ରୀଡ଼ାକୁ ପ୍ରକାଶିଲା
ମନୋଜ । ଚତୁସ୍ପୁର ମଧ୍ୟ ଚତ୍ୱରେ ।
ଉଷତ କରାଇ ରତ ଅନୁରାଗ ଅବିର ସେ ଖେଳେ ଚତ୍ୱରେ ।" କୋ: ବ୍ର: ସୁ: ।

ଏଥିରେ କବି ବହିଃସୌନ୍ଦର୍ଯ୍ୟ ଓ ଅନ୍ତଃସୌନ୍ଦର୍ଯ୍ୟ ଯୋଗ କରି ବସନ୍ତକୁ ଋତୁରାଜ ଆଖ୍ୟା ଦେଇଛନ୍ତି ।

ବର୍ଷା

ଲାବଣ୍ୟବତୀର ଦୀର୍ଘ ଦ୍ୱାତ୍ରିଂଶ ଛାନ୍ଦରେ ବର୍ଷାଋତୁ ବର୍ଣ୍ଣନା ଅତି ଚମତ୍କାର ଭାବରେ ଦିଆଯାଇଛି । ବିଜ୍ଞ ଅନଭିଜ୍ଞ, ଯୁବକ ଯୁବତୀ, ଭିକ୍ଷୁକ ପଥିକ ପ୍ରାୟ ସମସ୍ତଙ୍କ ମୁହଁରେ ଏହି ଛାନ୍ଦରୁ ପଦେ ଅଧେ ବେଳେ ବେଳେ ବାହାରି ପଡ଼ିବା ଶୁଣାଯାଏ । ସେଥିରୁ ପଦେ ଅଧେ ଏଠାରେ ନମୁନା ସ୍ୱରୂପ ଦିଆଗଲା—

"ଦେଖି ନବ କାଳିକା ବକାଳିକା ମାଳିକା ଆଳୀ କାଳିକାକାନ୍ତ ସ୍ମରି ।
ରକ୍ଷା କେମନ୍ତେ କରି ନ ଜୀବା ମନ୍ତ୍ରକରି ଗଡ଼ିକ ଏମନ୍ତ ବିଗ୍ରହି ସେ ।
ସହଚରୀ । ଭାବେ ବଞ୍ଚିଲେ ଏକାଳକୁ, କଥା ଥିବ କାଳ କାଳକୁ ।
ଏକେ ତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ ନ ଲଭି ବଲ୍ଲଭମେଳକୁ ରେ ।
"ହିତ ଆନମାନଙ୍କୁ ସତି କାମିଜନଙ୍କୁ ଅହିତଧରା ଅହିତ ଏହି ।
ହିତ କୃଶାନୁସାନୁମାନଙ୍କୁ ଭାନୁଭାନୁ-ତାପରୁ କାନ୍ତିରଲା ମଣ୍ଟାରେ । ସହଚରି ।"
ଇତ୍ୟାଦି । ଲା: ବ: ।

× × ×

"ଏକାଳ ଏକା ଏକା ଶାରେ ପକାଇ ଝଙ୍କା ବିଦ୍ୟୁତ୍‌ଛଟା ଅଛି ବହି ।
କି କଲେ ଟିଣଟେକା ଚଣ୍ଡ ଚମକ ଟେକା କରକା ମାରୁଛି ଗୁହାଇ ରେ ସହିତର ।
ଇତ୍ୟାଦି, ଲ: ବ: ।

## ଷଡ୍‌ଋତୁ ବର୍ଣ୍ଣନା

"ଛାଡ଼ି ହେଲେ ଲକ୍ଷ୍ୟମାନେ ବସନ୍ତ ଆକୃତ । ଚମ୍ପା ଫୁଟାଇ ରସ୍ୱଇ ହିତେଜ ଗତ । ଗ୍ରୀଷ୍ମ କି ବୃକ୍ଷ ଦୀପ ନଗରେ ଯେ ଯେନେ । ଅଗ୍ନି ଶିଖା ବଂଶେ ବିରାଜନ୍ତ ସ୍ଥାନେ ସ୍ଥାନେ ।। ବରଷା କି ନାଇ ସୂଚି ବିଜଣାଇ ଦେଇ । ଘନ ଘନ ଘନାଘନ ନୀଡ଼ା ପ୍ରକାଶଇ । ଶରଦ କି ଚନ୍ଦ୍ର ଉଦୟରେ ମନୋହର । ହିମ ଶିଶିର କି ଧୂମ କୁହୁଡ଼ି ଆକାର ଯେ ।" ପଦ୍ୟ୧—୮, କୋ: ବ୍ର: ସୁ: । ଲ: ବ: ଷଟ୍‌ତ୍ରିଂଶ ଛାନ୍ଦ, ପଂ—୫ଯାଏ, ବର୍ଷା, ଶୀତ, ବସନ୍ତ, ଗ୍ରୀଷ୍ମ ଋତୁ ବର୍ଣ୍ଣନା ଚିତ୍ତାକର୍ଷକ ଭାବରେ ଦିଆଯାଇଛି :—"ପ୍ରବେଶ ସୁରଭି ଘନରସମସ୍ତ ଜଡ଼ବର ସୁରଞ୍ଜନ । ସୁଖଦାତ ଘନସାର ପ୍ରକାଶରେ ହିତେତାପ ପ୍ରଭଞ୍ଜନ ହେ ସାଧୁ ।" ଇତ୍ୟାଦି, ଛାଁ୩୬, ଲ: ବ: । (ଏଥିରେ ୪ ଅର୍ଥ ଅଛି) କବିଙ୍କ ସମସ୍ତ ପ୍ରଧାନ କାଳ୍ପନିକ କାବ୍ୟରେ ଷଡ୍‌ଋତୁ ବର୍ଣ୍ଣନା ବିଶଦ ଭାବରେ ଦିଆଯାଇଛି । ବିଶେଷତଃ ଗ୍ରୀଷ୍ମ, ବର୍ଷା, ବସନ୍ତଋତୁ ପାଇଁ ଗୋଟିଏ ଗୋଟିଏ ପୃଥକ୍ ଛାନ୍ଦ ରଖାଯାଇଛି । ପୌରାଣିକ କାବ୍ୟଗୁଡ଼ିକରେ ଷଡ୍‌ଋତୁ ବର୍ଣ୍ଣନା ଥିଲେ ମଧ୍ୟ, ଦୁର୍ଲଭ ପୌରାଣିକ ଚରିତ୍ରକୁ ଅନୁସରଣ କରାଯାଇଥିବାରୁ, ସେଥିରେ ବିଶଦ ଋତୁବର୍ଣ୍ଣନା ପାଇଁ କବିଙ୍କ ଅବସର ନାହିଁ । ଅବନା ରସତରଙ୍ଗ, ୩୨ ପୃଷ୍ଠାରେ ବର୍ଷାକାଳ ବର୍ଣ୍ଣନା :—"ପ୍ରକଟ ଘନ ସମସ୍ତ, ଘନ ପଟଳ ଉଦୟ, ଧନ୍ୟରସ ଜନ୍ୟସ୍ଥଳ ଦରଶନର, ରତି ଷଣ୍ମୁଖଭର, ନଟନ ଅତଳପର, ତପ ଅନ୍ତକ ଅନଙ୍ଗ ମଙ୍ଗଳକର, ଏଡ଼ର ସମ୍ଭବ ସଉଧ, ନଗଧବ ତଳତ୍ୟକ୍ତ ଗମନ [illegible] ।" ଛାଁ୪, ପ ୧, ଅ: ର: । "ଏ ସମସ୍ତ ଝର ଝର ବରଷଣ ଚରତର ପ୍ରବଳ ପ୍ରକଟ ଘଟ ଘଟ ଶବଦ, ପ୍ଲବଗଣ ଭକ ଭକ ସମଦ, ରବକ ବକ, ଖର ଖର ଅନ୍ତକର ପ୍ରଳୟପ୍ରଦ ।" ଇତ୍ୟାଦି ଛାଁ୪, ପ ୩୦, ଅ: ର: । ଏଥିରେ ଶରତକାଳ ବର୍ଣ୍ଣନା ଛାଁ୮, ପଂ—୭ ଯାଏ, ଶୀତକାଳ ବର୍ଣ୍ଣନା ଛାଁ୧୧, ୧୭ ପୃଷ୍ଠାରେ, ବସନ୍ତ ଚିତ୍ରଣ ଛାଁ୨, ପୃ୧୦୪ରେ ଦିଆଯାଇଛି । ବୈଦେହୀଶ-ବିଳାସରେ ଷଡ୍‌ଋତୁ ବର୍ଣ୍ଣନାର ଅଭାବ ନାହିଁ । ବୈ: ବି: ପୃ୫୭୨, ଛାଁ୫୨ରେ ଶରତ୍‌କାଳ ବର୍ଣ୍ଣନା, ଚତୁର୍ଦ୍ଦଶ ଛାନ୍ଦରେ ବର୍ଷାକାଳ ବର୍ଣ୍ଣନା "ବଡ଼ ତୃଷାର୍ତ୍ତି ଚାତକ ଯେମନ୍ତ, ବାରିବାହଧ୍ୱନି ଶୁଣି ତେମନ୍ତ, ବିଦ୍ୟୁତ୍‌କାନ୍ତି ଝଟକ ଦଣ୍ଡିଗଲା," ଇତ୍ୟାଦି ଯେପରି ଭାବରେ ପଦେ ଅଧେ ଭାବସ୍ରୋତ ମଧ୍ୟେ ମଧ୍ୟେ ମିଶି ରହିଛି, ସେହିପରି ଅନ୍ୟାନ୍ୟ ପୌରାଣିକ ଗ୍ରନ୍ଥାଦିରେ ଷଡ଼ଋତୁ ବର୍ଣ୍ଣନା ବିକ୍ଷିପ୍ତ ଭାବରେ ଚମତ୍କାର ରୀତିରେ ଦେଖାଯାଏ । ଷଡ଼ଋତୁ ବର୍ଣ୍ଣନା ମଧ୍ୟରେ ବିହଙ୍ଗମ କୁଳର ବିଚିତ୍ର ରବ, ପଶୁକୁଳର ଶାନ୍ତସ୍ୱଭାବ ସଙ୍ଗେ ସଙ୍ଗେ ତର୍ଜ୍ଜନ ଗର୍ଜ୍ଜନ, ବ୍ୟୋମବିହାରୀଙ୍କ ସଙ୍ଗୀତ ସ୍ୱରଲହରୀରେ ବିବିଧ ରଙ୍ଗରସର ବାଦ୍ୟ, ତାଳକାଳର ଲକ୍ଷଣ ଅନୁଭୂତ ହୁଏ; ତା ପରେ ବିଭିନ୍ନ ଋତୁରେ ବନ ଉପବନର ପ୍ରସ୍ଫୁଟିତ ପୁଷ୍ପନିଚୟ ଯେଉଁପରି ଭକ୍ତ ସାହିତ୍ୟକୁ ଆମୋଦିତ କରି ରଖିବା ତୁଲ୍ୟ ଅନୁଭୂତିକୁ ଆପେ ଆପେ ଆସିଯାଏ, ସେହିପରି ସେହି ବନ ଉପବନର ବିଭିନ୍ନ ପରିପକ୍ୱ ଓ ଅର୍ଦ୍ଧ-ପକ୍ୱ ଫଳ ପାଠକପାଠିକାଙ୍କ ମନ ଧ୍ୟାନ ସେହି ଦିଗକୁ ଆବାହନ କରିବାରେ ଅନବରତ ବ୍ୟସ୍ତ ଥିବା ପ୍ରତୀତ ହୁଏ ।

ପାଶ୍ଚାତ୍ୟ କବିମାନେ ଆମ୍ଭମାନଙ୍କୁ ବାରମ୍ବାର ଲର୍କ, (lark) ରବିନ (rabin) ର ସଙ୍ଗୀତକୁ ପଦେ ଅଧେ ଶୁଣାଇ ମୁଗ୍ଧ କରନ୍ତି । ("And hear the sound of music sweet from birds among bowers :—Michael) ସେହିପରି ବର୍ଣ୍ଣନାରେ ଉପେନ୍ଦ୍ର କ'ଣ କହିବା ଅନାବଶ୍ୟକ । ଶୀତ ଋତୁ ଉପଲକ୍ଷରେ ସେକ୍ସପିଅର କହନ୍ତି—ଶୀତରେ ରକ୍ତ ଶୁଖିଯାଏ, ବରଫପାତରେ

ପଥ ଦୁର୍ଗମ ହୁଏ, ବହୁଜନସକୁଳ ଚନ୍ଦ୍ରାଲୋକ ପଡ଼ନ୍ତ ।.("When blood is nipt and ways be foul,.........nightly sings the staring owl ..birds sit brooding in the snow," Shakeshpear । ଉପେନ୍ଦ୍ର କହନ୍ତି—"କରଟ ମଧୁଶ ଯେ ଝିଲ୍ଲିକା ରବେ" କୋ:ବ୍ରୁ:ସୁ: । ଶୀତ ଦିନରେ କାକ ଚଞ୍ଚଳ ଦେଖାଯାଏ, ଝିଙ୍କାରୀ ସଙ୍ଗୀତ ମଧୁମୟ ହୋଇଉଠେ, ପ୍ରେମିକ ପ୍ରେମିକା ଓ ଧନଜନମାନଙ୍କ ଦିନ ସୁଖରେ କଟେ, ଦୀନ ଦୁଃଖୀଙ୍କ ଦିନ ଅପର ହୁଏ, "ଲବ ଜଳପ ନରଇ ଅଧନର ।" ରସତରଙ୍ଗ । ଏହିପରି ବର୍ଣ୍ଣନା ସଂକ୍ରାନ୍ତରେ ପାଶ୍ଚାତ୍ୟ କବିମାନେ ପୃଥ, ଛଅ ପଦ ଲେଖିବା ବେଳେ, ଉପେନ୍ଦ୍ର ୪ । ୭ ପୃଷ୍ଠା ରଚନା କରି ସ୍ୱରର ଗାମ୍ଭୀର୍ଯ୍ୟ, ଶବ୍ଦଯୋଜନାର ମାଧୁର୍ଯ୍ୟ ପ୍ରଦର୍ଶନ କରିଛନ୍ତି ।

ଚନ୍ଦ୍ରମା ନିଶା

ଲାବଣ୍ୟବତୀ ୩୨ ଛାନ୍ଦରେ ବସନ୍ତକାଳୀନ ଚନ୍ଦ୍ରମା ରାତ୍ରି ବର୍ଣ୍ଣନା, ସ୍ୱର, ଭାଷା, ଚାତୁର୍ଯ୍ୟ ମାଧୁର୍ଯ୍ୟରେ ପୃଥିବୀ ସାହିତ୍ୟରେ ବିରଳ:—

"ଏ ସମସ୍ତେ ଉଦୟ ହୋଇଲେ ସୁଧାକର
କିରଣରେ ପ୍ରତି ଦିଗ ଦିଶିଲେ ସୁନ୍ଦର ଯେ ।
ନିଶାମା ଆଲିଙ୍ଗନରୁ ଏହି ଅନୁମାନ
କଲାଦେହେଁ ଯେମନ୍ତ ଚନ୍ଦନ ବିଲେପନ ଯେ ।
କାଚଭିତ୍ତି ସ୍ଫଟିକ ସୋପାନ ବସୁଧାରେ
କ୍ଷୀରାର୍ଣ୍ଣବ ମିଶିଲା କି ଜ୍ୟୋତ୍ସ୍ନାରେ ଯେ
ରବିତାପ ଶାନ୍ତ୍ୟର୍ଥେ କିବା ପରମେଷ୍ଠୀ
ଘନସାର ଚୂର୍ଣ୍ଣରେ ପୂରିତ କଲେ ସୃଷ୍ଟି ।
ଖଣ୍ଡପରଶୁଭୂଷଣ ଖଣ୍ଡପର୍ଶୁଧର
ସୁଧାରେ ଧବଳ ଦେଲା କି ବସୁଧାପୁର ଯେ ।
ପ୍ରଦୋଷ ସଙ୍ଗ ଯେ କ୍ଷଣଦାର ହୋଇଥିଲା
ଏଣୁ କି ତ୍ରିପଥଗା ଜଳରେ ସ୍ନାନ କଲା ଯେ ।" ଇତ୍ୟାଦି ।

ଛା ୩୨, ଲା: ବ: ।

"ବଧୂ, ଗୁରୁ, ଗର୍ବ, ଅଙ୍ଗିରା ଉଦିତ ।
ବନଶ୍ୟାମ ଧାଇଁ ଗଲି ନିବଡ଼ ଧ୍ୱାନ୍ତ ।" ବୈ: ବ: ।
"ହୋଇଲା ତାମସୀ ଯେ ସେ ବାହାର ।
ବଢ଼ାଇଦେଲା ସନ୍ଧ୍ୟାଛଳେ କର ।" ଇତ୍ୟାଦି

ପ ୨୨-୨୯; ଛା ୭, ବୈ: ବ: ।

"ସନ୍ଧ୍ୟା ପ୍ରକାଶି ରବିକି ନାଶି ତା ଦେଖି ପଦ୍ମିନୀ ଛନ୍ନ
ସମସ୍ତ ଭୃଙ୍ଗ ଛଳରେ ବେଗ ବିଷଗୁଳା କଲେ ପାନ ।
ସେନେହ ଭଲେ ଏ ନାଦ କଲେ ଦେବାଳୟେ ଯାହା ଶଙ୍ଖ ।
ସଖି ଏ ନୋହେ କି ଖର କେହି କୁମୁଦନୀ ହାସ୍ୟ ମୁଖ ।"

ଇତ୍ୟାଦି, ର: ପ: ।

### ପ୍ରଭାତ

"ଅରୁଣ ମଣ୍ଡଳେ ଉଦେ ଦୃଷ୍ଟି ନାହିଁ ଇନ୍ଦୁ ।
ଜାଳ ବାରୁଣୀ ସେବବା ରଙ୍ଗ ଆଜ ଅଙ୍ଗ ଯେ ।
ଜଳୁଭ ପ୍ରାଙ୍ଗଣେ ନଳପଣ୍ଡ ବଳେ ଶୁଦ୍ଧି ।
ପଦ୍ମିନୀ ହସିଲ ଦରମୁକୁଳିତ ହୋଇ ଯେ ।
ତଜି ଭୃଙ୍ଗରାଜ କୁମୁଦିନୀ ପାଶ୍ୱେଁ ଗଲେ ।" ଇତ୍ୟାଦି ।

ଛ ୨୮, ଲ: ବ: ।

ବିଶ୍ୱାମିତ୍ରଙ୍କ ସହିତ ରାମ, ଲକ୍ଷ୍ମଣ ଜଙ୍ଗଲରେ ରାତି ଅତିବାହିତ କଲେ । ପ୍ରଭାତ ହେଲା :—

"ବାସକ ଦିଶ ଅଭ୍ରମୁ ଜଣେଣୀ । ଭଜନ୍ୟ କଳ ରକ୍ତପିଣ୍ଡ ଜାଣି ।
ବସୁ ସବିତାର ଦଣ୍ଡି ଆସିଲ । ଦ୍ୱେଷେ ନକ୍ଷତ୍ର ଶୀତବାତ ସେ ହେଲ ।"

ଇତ୍ୟାଦି, ଛ ୬, ବୈ: ବି: ।

ଅନ୍ୟ ଏକ ଦୃଷ୍ଟାନ୍ତ—

"ପ୍ରାନ୍ତ ହୋଇବାରୁ ଜଣ ବିଭାବରୀ
ପରକାଶ ରାଗବନ୍ତ ଆଶାନାରୀ ।
ପ୍ରଭା ମଣ୍ଡନ ଲାଭ ତାରକାରାଜି
ପୂର୍ଣ୍ଣମୋଦେ ଦ୍ୱିଜେ ବାଞ୍ଛୁ ପଦ ଭଜି ।" ପୃ ୩୮-୪୧, ର: ପ: ।

ବୈଦେହୀଶବିଳାସରେ ସନ୍ଧ୍ୟା ବର୍ଣ୍ଣନା—

"ବାରୁଣୀ କୁଣ୍ଡେ ବୁଡ଼ାଇ ଧନକୁ, ବିନାଶ କରିବା ଇଚ୍ଛି ଦିନକୁ ।
ବାଳ ଧର କବା ନେଇ ଆକର୍ଷି, ବାସ୍ୱହଚସ୍ୱ ଗିବା ତଥା ଦଣ୍ଡି ।
ବୋଲିଦେଲ ପକ୍ଷୀ ନାଦଛଳର, ବଡନେ କାଳି ପଡ୍ରିଲ ଦରର ।
ଛକଟାଳକୁ ସନ୍ତୁ ଦରଶନ, ବୁଜିଲ ପଦ୍ମିନୀ ପଦ୍ମନୟନ ।" ବୈ: ବି: ।

### ସମୁଦ୍ର

ସମୁଦ୍ର ବର୍ଣ୍ଣନା କବିଙ୍କ ଗ୍ରନ୍ଥାଦିରେ ବିରଳ ବୋଲି କେହି କେହି ମତ ପ୍ରକାଶ କରନ୍ତି । ସିଂହଳ ସହିତ କର୍ଣ୍ଣାଟର ସମ୍ବନ୍ଧ ଥିବା ବେଳେ କବି ସମୁଦ୍ରବର୍ଣ୍ଣନା ପରିଷ୍କାରରୂପେ 'ଲବଣାର୍ଣ୍ଣବ'ରେ ଦେଇ ନାହାନ୍ତି । ଯେଉଁ ବିଷୟ ବର୍ଣ୍ଣନା ନେଇ କବି ତତ୍ପର ଥିଲେ, ସେଥି ଭିତରେ ବ୍ୟାପକ ସମୁଦ୍ରବର୍ଣ୍ଣନା ଖଞ୍ଜି ଥିଲେ ରସଭଙ୍ଗ ହୁଅନ୍ତା । ସେଥିପାଇଁ ବୋଧହୁଏ, ସେ ସେଠାରେ ତାହା କରି ନାହାନ୍ତି । କିନ୍ତୁ ଭଞ୍ଜଙ୍କ ଗ୍ରନ୍ଥାଦିରେ ସମୁଦ୍ରବର୍ଣ୍ଣନାର ଅଭାବ ନାହିଁ ।

ପାଞ୍ଚ ପ୍ରକାର ସମୁଦ୍ର—'ଇକ୍ଷୁ, ସୁରା, ସର୍ପି, ଦଧି, ଦୁଗ୍ଧ' ଉପଲକ୍ଷେ ସେ କହନ୍ତି—

"ବାରେଶ୍ୱରୀ ଏ ତରଳତର, ଅଧୀର ଥିଲ ଅତି ମାତର
ଯାହା ପ୍ରତାପେ ହୋଇ ନାତର ସେ ତରତର ଯେ ।
ବ୍ୟାକୁଳ ଜାତ ପାଞ୍ଚ ପାଥର," ଇତ୍ୟାଦି । ବୈ: ବି:, ଛ ୧ ।

"ସେ ଦୂର୍ଭ ପରେଖା ଗାର୍ଯ୍ୟସଜ ଗର୍ଜ୍ଜନରେ
କହେ ଅବଗାହେ ପାପବ୍ୟୂହ ଦହନରେ ହେ ।" କୋ: ବୃ: ସୁ: ।

ସାଗର ସହିତ ଜଗନ୍ନାଥଙ୍କର ତୁଳନା :—

"ଶିରେ ହେମ-ରତନ-ମୁକୁଟ ସପ୍ତଶାଖା, କରୁଣା-ସିନ୍ଧୁରେ କି ବଡ଼ବାନଳ ଶିଖା ହେ ।"
କୋ: ବ୍ର: ସୁ: ।

"ସୁମନା ମାନେ ମାନସେ ବସ୍ତିତ । ଲବଣ୍ୟ-ସିନ୍ଧୁ ନଶ୍ଚେଁ ଏ ନାଗସ୍ତ ।
କତି ମକରି ଉତେ ରଞ୍ଜିତ । ଦ୍ରୁତମ-କଟକେ କରେ ସଯୁକ୍ତ ।"
ଇତ୍ୟାଦି । କୋ: ବ୍ର: ସୁ: ପ ୧୮-୧୯ରେ ସମୁଦ୍ରର ଅଧିକାଂଶ ଲକ୍ଷଣ ସନ୍ନିବେଶିତ ।

"ମୀନ ମକର ଲକ୍ଷଣ ନକର ଦେଖିଲ ।
ଆନନ୍ଦ ସମୁଦ୍ର କରି ପୁଣି ସେ ଘୋଷିଲ ଯେ ।।
ସତେ ସତେରେ ସେ ଶଙ୍ଖରେ ମନ ମିଶି ।
ଅଙ୍ଗ ସଙ୍ଗ ଏ ରୂପେ ତୁଅନ୍ତା ହେଲ ଘୋଷି ଯେ ।।"
ଛ ୧୪, କୋ: ବ୍ର: ସୁ: ।

"ଏକାଳେ ମନ୍ତ୍ରି ଏ ନୃପ ସନମନ୍ତ ପାଇ ।
ନଗରଦ୍ୱାରକୁ ବେଗ ସାଗର କରାଇ ଯେ ।
ଶଙ୍ଖ ମଧ୍ୟସ୍ତ ଧ୍ୱନରେ ହୋଇଛି ପ୍ରଧାନ ।
ବିବିଧ ବାଦ୍ୟ ଶବଦ ସ୍ୱର୍ଗାସ୍ତ ଗର୍ଜନ ଯେ ।
ତହିଁ ଲଗୁଡ଼ ପ୍ରହାର ଝଂସନୀଡ଼ା ଝଳ ।
ତମୋନୁଦ ବୃନ୍ଦ କି ବଡ଼ବାନଳ ଜଳ ଯେ ।"
ଛ ୩୩, ପ ୨୬୮, କୋ: ବ୍ର: ସୁ: ।

ବୈ: ବି:, ଛ ୧୨, ପ ୧୧—୧୬ରେ ସମୁଦ୍ର ସହିତ ଦଶରଥଙ୍କ ଦଳବଳର ତୁଳନା କରାଯାଇଛି । "ବାର୍ଦ୍ଧି ଏ ଏମନ୍ତ ବୁଦ୍ଧି ପ୍ରକଟିତ" ........ଇତ୍ୟାଦି, ପ ୧୨—୧୩, ଛ ୪୦, ବୈ: ବି: । "ବାନରସେନା ତହିଁ ସିନ୍ଧୁ ମନ୍ଦର ମେନ୍ଥ" ଇତ୍ୟାଦି । ବୈ: ବି: । "ବାହ୍ରାଗ ବାଗଧି ଲହରୀ ଯେମନ୍ତ" ଇତ୍ୟାଦି, ଛ ୫୧, ବୈ: ବି: । "ଶୂନ୍ୟେ ରଥ ଗମଇ ସମୁଦ୍ରେ ପୋତ ପରି......" ପ ୪୮, ଛ ୧୬, ସୁ:ପ: । "ସଜତ ପନ୍ଥ ମନୋ ମଧ୍ୟେ ସ୍ଥିତ । ସୁଖେ ହୋଇଥିଲ ଆଶା ବୋଇତ, ସୁପୁରୁଷ ଗଣ ନବଗଣ ବତାସ ବଶେ ଲାଗିଲ ତୁରିତ ହେ । ସୁଜନେ ।" ପ ୨୫, ଛ ୯, ସୁ: ପ: ।

ସମୁଦ୍ର ବର୍ଣ୍ଣନରେ ଅନ୍ୟ ଏକ ଦୃଷ୍ଟାନ୍ତ—

ରାମଚନ୍ଦ୍ର ମର୍କଟବାହିନୀ ସହିତ ସମୁଦ୍ରତଟରେ ପହଞ୍ଚିବା ପରେ, ସେଥିର ଜଳ, ଲହରୀ, କଚ୍ଛପ, କୁମ୍ଭୀର, ପ୍ରବାଳ, ବାଡ଼ବାଗ୍ନି ପ୍ରଭୃତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସମୁଦ୍ରଜଳ ଦଧି, ଦୁଗ୍ଧ, ସୁରା ଓ ସର୍ପି ଗୁଣଯୁକ୍ତ ଓ ସମୁଦ୍ର ତୀର୍ଥରାଜ ଥିବା ହେତୁ ସୁକୃତ ଫଳଦାୟକ ବୋଲି କବି ନିମ୍ନ ଭଙ୍ଗୀରେ ବ୍ୟକ୍ତ କରିଛନ୍ତି—

"ବାରିନିଧିକି କେତେ ଧନେ ଭେଟି । ନୀଚ ତ ଅଧିକାରେ ପ୍ରକଟି ।
କୀଣାକୁମ୍ଭ ପ୍ରାୟେ ବନ୍ଧୁ ପ୍ରବାଳେ । ବଗକ ଜ୍ୟୋତ ଇକ୍ଷ୍ୱାକୁକୁଳେ ।
ବୃନ୍ଦ ବୃନ୍ଦ ସହିଁ କଚ୍ଛପ ଯୁକ୍ତ । ବସିଷ୍ଠ ସାରଗୁଣାହିଁ ବ୍ୟକ୍ତ ।

ବିପିନ ପ୍ରାନ୍ତେ ପଲ୍ଲୀରେ ମେଳ । ବିହାରି ଜନେ ଲଭି ସୁଫଳ ।
ବିଲସନ୍ତ ପରଜ୍ଜନ ଭ୍ରମରେ । ବରଙ୍ଗ ସ୍ଥିତ ସନ୍ଧି ମଧ୍ୟରେ ।
ବୈକୁଣ୍ଠବେଣୀ ସିନ୍ଧୁକୂଳେ ସ୍ଥିତ ।" ଇତ୍ୟାଦି । ବୈ ବି ।

## ନଦୀ ବର୍ଣ୍ଣନା

ଯେ କୌଣସି ଦେଶର ନଦୀ ହେଉଛି ପ୍ରଧାନ ସମ୍ପଦ । ବୈଦେଶିକ ବଣିକ ଶତ୍ରୁମାନେ ଯେତେ ଲୁଣ୍ଠନ କରି ଦେଶକୁ ଶ୍ରୀଶୂନ୍ୟ କରି ପକାଇଥିଲେ ମଧ୍ୟ, ନଦୀ ଓ ଖନିଜ ସମ୍ପଦ୍‌କୁଶଳ ଦେଶ ପୁନେ ଶ୍ରୀସମ୍ପନ୍ନ ହୋଇ ଉଠିବା ସୁନିଶ୍ଚିତ । ଉତ୍କଳର ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା, ମହାନଦୀ ଇତ୍ୟାଦିର ବନ୍ୟା ବ୍ୟାପାତ ଯୋଗୁଁ ଦେଶର ଶସ୍ୟହାନି, ମନୁଷ୍ୟ-ପଶୁ-କ୍ଷୟ ବାରମ୍ବାର ଘଟୁଥିଲେ ମଧ୍ୟ, ନଦୀହିଁ ଦେଶର ସାରସ୍ୱତ ସମ୍ପଦ ଭାବି, ଗୋପବନ୍ଧୁ କହନ୍ତି—"ଆଅ ଗୋ ବ୍ରାହ୍ମଣୀ ପୀନପୟୋଧରୀ, ତୋହଲାଗି ହେଉ ଉତ୍କଳ ଉର୍ବରୀ । "ରାଧାନାଥ ରାୟ ଉତ୍କଳର ନଦୀ-ସମ୍ପଦରେ ଗର୍ବ ଅନୁଭବ କରି କହନ୍ତି—"ଉତ୍କଳର ହେମ ସୀମନ୍ତ ରୂପିଣୀ, ଦେଖ ବତ୍ସ ! ଏହି ସୁବର୍ଣ୍ଣ-ତଟିନୀ । "ନଦୀ ମନ୍ଦାକିନୀ ଅମନ୍ଦ ଗାମିନୀ, ରଣପୁର ରାଜ୍ୟ ବନ-ବିହାରଣୀ । "ଋଷିକୁଲ୍ୟା ତଟ ସୁବର୍ଣ୍ଣତଟିନୀ, ଯାବ ଗ୍ରାସ୍ୟା ଯାର ବ୍ୟାପିଲ ମେଦିନୀ ।"

ଉପେନ୍ଦ୍ର କହନ୍ତି—

"କାଳନ୍ଦୀ ଭୂତର କୃଷ୍ଣବେଣୀ ପୁଣି ଲକ୍ଷି । ଚନ୍ଦ୍ରଭାଗାଳଙ୍କଶୋଭୀ ଚାରୁ ଉତ୍ପଳାକ୍ଷୀ ଯେ । ହୋଇଥିବ ଯୁକ୍ତରସ ସରସ୍ୱତୀ ସଦା । ନରତ ପର୍ବତ ହୋଇ ରେବାରେ ବାହୁଦା ଯେ ।।" କୋ: ବ୍ର: ସୁ: ।

"ଋଷୋଦସ୍ୱବନ ତାବେଶୀ କୂଳେ" ଇତ୍ୟାଦି । ଲା: ବ: ।

"ବିଲୋକ ନଦୀ ଗୋଦାବରୀ । ବାମା କି ଶୁକ୍ଳ ଅଭିସାରୀ ।" ବୈ: ବି: ।

କବିଙ୍କ ଭୌଗୋଳିକ ଜ୍ଞାନର ପରିଚୟ ଦେବା ବେଳେ, ନଦୀ ସମ୍ପର୍କରେ କିଛି ଚର୍ଚ୍ଚା କରାଯାଇଛି । ଅଧିକ ଦୃଷ୍ଟାନ୍ତ ବର୍ତ୍ତମାନ ଅନାବଶ୍ୟକ ।

## ପର୍ବତ ବର୍ଣ୍ଣନା

"ସହ୍ୟମଳୟ ପାରିପାତ୍ରିକ ବିନ୍ଧ୍ୟ ହେମାଦ୍ରି ମେରୁ ମୈନାକ ଗନ୍ଧମାଦନ କୈଳାସ ଲୋକାଲୋକ ସହିତ ଯେ ।" ସୁ: ପ: ।

"ବିମାନପକ୍ଷ ହୋଇଲ ଅଚଳ ପଦକୀ ନେଲ," ଇତ୍ୟାଦି । ଗ୍ରୀ୪୭, ବୈ: ବି: ।
"ବରଷାର ପର ଭୂଭୃତ ଶିର ମଣ୍ଡନ .. ..." ଇତ୍ୟାଦି ବୈ: ବି: ।
"ଘନ ପ୍ରତିବନ୍ଧେ ଗିରିକି ଯୋଡ଼ାଇ ଲୁକ୍‌ଇଁଛି ପ୍ରକାଶେ ।" ଲା: ବ: ।
"ନୃପଭୂଷା ତେଜି ମଳୟ ପର୍ବତେ ବସନ୍ତେ ଅଯେ ବାସବ ।
ବ୍ରହ୍ମଲୋକ ଗ୍ରନ୍ଥ ସେହି ପୁଣି ଲେଉ ଗନ୍ଧମାଦନ ଶିଖରୀ," ଇତ୍ୟାଦି । ଗ୍ରୀ୧୦, ବୈ: ବି: ।

## ମାଲ୍ୟବନ୍ତ ପର୍ବତବର୍ଣ୍ଣନା

"ପ୍ରସ୍ରବଣଧର ପରେ ଯିବଂ ଗମନ । ତବ ରଞ୍ଜନ ରଞ୍ଜଇ ସମସ୍ତ ମନ । ଲଙ୍ଘଇ ମହତ ମହାଇ ଭର ସମ । ଅନନ୍ତ ଉନ୍ନତ ଦନ୍ତ ନଟନ ରମ୍ୟ ।" ଇତ୍ୟାଦି । ପୃ ୨୪—୨୭, ଗ୍ରନ୍ଥ, ଅ: ର: । ପର୍ବତବର୍ଣ୍ଣନାରେ ସ୍ଥାନେ ସ୍ଥାନେ ସୁନ୍ଦର ସାତ୍ତ୍ୱିକ ଚିତ୍ର ଦିଆଯାଇଛି । ମନୁଷ୍ୟ ସହିତ ପଶୁ ପକ୍ଷୀ, ହିଂସ୍ରଜନ୍ତୁଙ୍କ ଅମାୟିକ ବ୍ୟବହାର ଚିତ୍ତାକର୍ଷକ ଭାବରେ ଦେଖିବାକୁ ମିଳେ । ମାଲ୍ୟବନ୍ତରେ ରାମ, ଲକ୍ଷ୍ମଣ ଆଶ୍ରୟ ନେଲାବେଳେ ମୃଗିଣୀ ଓ ହିଂସ୍ରଜନ୍ତୁ ଇତ୍ୟାଦିଙ୍କ ବ୍ୟବହାର, ଗୃହିଣୀଭଙ୍ଗୀ ହୃଦୟସ୍ପର୍ଶୀ ଓ ଶିକ୍ଷଣୀୟ ।

## ବନବର୍ଣ୍ଣନା

ବୈଦେହୀଶବିଳାସ ଓ ଲାବଣ୍ୟବତୀରେ ବନବର୍ଣ୍ଣନାର ମାଧୁର୍ଯ୍ୟ ଅବର୍ଣ୍ଣନୀୟ । ଲାବଣ୍ୟବତୀର ଚତୁର୍ବିଂଶ ଛାନ୍ଦ, ନମୁନାସ୍ୱରୂପ ଗ୍ରହଣ କରାଯାଇ ପାରେ ।

ବନବର୍ଣ୍ଣନାରେ ସେ ପ୍ରଥମେ କହନ୍ତି—"ନ ଥିଲା ହୋଇ ପାଦପ ନାହିଁ ଆଉ ଚଉଦ ଭୁବନେ ନାହିଁ, ମଣ୍ଡେ ଅଳାଇଚ କଙ୍କୋଳ ସଘନ ଯହିଁ ଯେ ।" ଲ: ବ: । "ସଫଳ ଆମ୍ବ ତାଳମ୍ବ କମ୍ବା ଦ୍ରାକ୍ଷା ତୁମ୍ବୀ ନାରଙ୍ଗ ମାତୁଳୁଙ୍ଗ ଇତ୍ୟାଦି ସୁ: ପ: । ସଫଳ ତହିଁ ପୁଗ ନାରଙ୍ଗ ଶ୍ରୀଫଳ ତାଳ ସୁମାରୁଲୁଙ୍ଗ, ଲଙ୍ଗଳୀ କରମଙ୍ଗାହିଁ ସଙ୍ଗ ବିପୁଳ ଖବ ଯେ... ।" ଲ:ବ: । ଅସଂଖ୍ୟ ତରୁଲତା, ପରିପକ୍ୱ ଓ ଅପରିପକ୍ୱ ଫଳ ବର୍ଣ୍ଣନା ପରେ କବି ବିହଙ୍ଗମକୁଳର ମଧୁର ସଙ୍ଗୀତଧ୍ୱନି ଶୁଣାନ୍ତି, ଯଥା—"ଭାଷନ୍ତି ଭାଷ ପାରା କପୋତ......"; "ଚନ୍ଦ୍ରକ ଟେକି ନାଚନ୍ତି କେକୀ ଉର୍ଦ୍ଧ୍ୱରୁ ଖସୁଛନ୍ତି ଗୃଡକୀ ଯହିଁ ତମାଳ ତରୁକୁ ତର୍କି... " ଇତ୍ୟାଦି । ଲ: ବ: କବି ପ୍ରାକୃତିକ ଦୃଶ୍ୟାବଳୀରେ, ବିହଙ୍ଗମକୁଳର ସଙ୍ଗୀତଧ୍ୱନିରେ ବିହ୍ୱଳିତ ହୋଇ କୋକିଳ ମୁଖରେ ନିଜ ମନକଥା କହନ୍ତି :—" ଆଷାଢ଼େ କରି ଏ ରସ ପାନ କରଇ ମୁଁ ଯେ ପଞ୍ଚମ ଗାନ ଏହା ଯା ଯାଣୁ ନାହାନ୍ତି ଆନ ମୋ ସ୍ୱରେ ଏହି ଯେ ।" ଗ୍ର ୨୪, ଲ: ବ: ।

ପୁଷ୍ପିତ କାନନ ସୌନ୍ଦର୍ଯ୍ୟ ଉପଲକ୍ଷେ କବି କହନ୍ତି :—"ଯେଣେ ଗ୍ରହିଁଲେ ନବ ପାଟଳ ଜମ୍ବୁନ୍ତ କୁରୁବକ ଶାଲ୍ମଳୀ ପୁଷ୍ପିତ କେନ୍ଦୁ ପଲ୍ଲବେ ଝଳ......" । ସରୋରୁହ ଚମ୍ପା କୁମୁଦ ପାଟଳୀ କଦଳୀ ଶିରୀଷ ଅଶୋକ......" । ସୁ: ପ: ।

## ମୃଗୟା

ମୃଗୟାଚିତ୍ର ଭଞ୍ଜ-ସାହିତ୍ୟରେ ଅପର୍ଯ୍ୟାପ୍ତ । ଚନ୍ଦ୍ରଭାନୁଙ୍କ ସଚିବସୁତ କିଷ୍କିନ୍ଧା ବନରେ ମୃଗୟା ପାଇଁ ଅନୁରୋଧ କରିବାରୁ ସେ ଦଳ ବଳ ସହିତ ଅଶ୍ୱାରୋହଣପୂର୍ବକ ବାହାରିଲେ । ଶବରମାନେ କାଣ୍ଡ ଟାଙ୍ଗି ଧରି ଆଗ ପଛ ହୋଇଗଲେ । ବ୍ୟାଧମାନେ "ବନ୍ଧଣ ନଳ ତାଳଚାଟୀ" "ନଳୀ ଆଳରେ ଘେନି ଅଠାକାଠି" ବନ୍ଧି "ବାଗୁରା ସଙ୍ଗେ ସଙ୍ଗେ ବାହାରିଲେ, ଦଳ ଦଳ ମାହୁନ୍ତ ଗ୍ରହିତ ଗଲେ । ଶିକାରୀମାନେ 'ମନ୍ତ୍ରର ପଢ଼ି ଧୂଳି ଉଡ଼ାଇ' 'ପଶୁ ପଦ ଗୋଡ଼ାଇ' ଯିବାରୁ ବନ୍ୟ ଜୀବଜନ୍ତୁ ଦୂରରେ, ସମୀପରେ, ସମ୍ମୁଖରେ ଦେଖାଗଲେ । କବିଙ୍କ ଭାଷାରେ—"ସେ ଗ୍ରାମୁଁ ଜୀବ ସନ୍ନିରେ କାଳୀ ଦେଇ କୁହାଟ ଟମକ ଡାଳ ଫିଙ୍ଗିଲେ ସାଜ କୁନ୍ତ ସାବଳୀ ବନ୍ଧିଲେ ତୀର ଯେ । ପ୍ରତି ନଳୀରୁ ଗୁଳି ବାହାରି ଗୁଡ଼ି ଦେବାରେ ବାଟ ବଇଆ ମାଡ଼ିବସିଲେ ପକ୍ଷୀଙ୍କ ଧରି କି ମନୋହର ଯେ । ଜାଲେ ପଡ଼ିଲେ ଆଉରି ପଶୁନିକର । ଗାତେରି ପଡ଼ିଲେ କେତେ କେତେ କୁଞ୍ଜର । ମାର ରେ ମାର ଏ ଶବ୍ଦରେ, ପୂରିତେ ହେଲା ଅମରପୁର ଯାଜିଲା ଅବା

କେଉଁ ଅସୁର ସ୍ତବକେ ସୁର ଯେ । ଭଲ୍ଲରେ ଭଲ ଭଲ୍ଲ ଭୁକ୍ଷଲେ ମଲ୍ଲ ଯୁଝିଲେ ଶାର୍ଦ୍ଦୂଳ ଗୁଳେ ଖଡ୍‌ଗ ଶ୍ରେଷ୍ଠ ପରୀକ୍ଷା କଲେ ଖଡ଼୍‌ଗ ପରେ ଯେ । ଶରଭ ଶରଭରେ ବନାଶି ଧାରଣ କଲେ ଉଦାର ମିଶି ସୁଗାଢ଼ ଯମଦାଢ଼ ପ୍ରକାଶି ଅତି କୋପରେ ଯେ । ଗୁଣ୍ଡି ସଲ୍ଲକ ଫଳ ଶ୍ୱାନହିଁ ହିଂସେ । ମସ୍ତକ ଲଲ ଦଶେ କଲଲ ବଶେ ଯେ । ସର୍ବାଙ୍ଗ ରଙ୍ଗ କଲେ ଜନାଳ ଗଜ ବରସ୍ଥ କୁରଙ୍ଗ ନଳୀ ଯୋଗରେ ଫଗୁ ପିଚକା ଚଳ ଅତି ରହସ୍ୟ ଯେ ।" ଇତ୍ୟାଦି । ଲ: ବ: ।

ମୃଗୟା ଶେଷରେ ଯୁବରାଜ ବସାକୁ ଫେରିଲେ । ମାଂସ ଲୋକଙ୍କ ମଧ୍ୟରେ ବିତରଣ କଲେ ଦ୍ୱୀପୀ ଅଜିନ ବୈଷ୍ଣବମାନଙ୍କୁ, ଖଡ଼୍‌ଗପାତ୍ର ବ୍ରାହ୍ମଣମାନଙ୍କୁ, ଶୃଙ୍ଗ ଶୃଙ୍ଗକାରଙ୍କୁ, ଚର୍ମ ଚର୍ମକାରଙ୍କୁ, ବରାହଲୋମ ପାଟରୀଙ୍କୁ, ମୃଗନାଭି ବଣିକମାନଙ୍କୁ ଅର୍ପଣ କରି ପ୍ରଶଂସିତ ହେଲେ ।*

### ସରୋବର

"ସରସୀ ଶୋଭିତ ଅନାଇଁ ମନ ନେତ୍ର ଲୋଭିତ । ତଟ ଘଟନା ବିଦ୍ରୁମରେ ପକ୍ଷିପନ୍ତି ବିମ୍ବିତ । କି ନୀଳଶାଢ଼ୀ ରଙ୍ଗ ଧଡ଼ି ହଂସାବଳୀ ହୋଇଛି । ଅବନୀ ବନିତା ବିସ୍ତାରେ କିବା କରିବା ଇଚ୍ଛି । ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ନୀର ତୀର ପ୍ରସ୍ତାତ । ସୁବେଣୀ ସ୍ପରଶ ଷଡ଼ କି ତହିଁ ତ୍ରିବେଣୀ ଖ୍ୟାତ । ଧୀପଦଶ୍ରୀ ଲଭି ମରାଳପନ୍ତି ଦିଏ ଭଉଁରି । ବଡ଼ ବଡ଼ବର୍ଣ୍ଣକ ବେଢ଼ି କି ଶୋଭା ଚୂର୍ଣ୍ଣି ଚଉଁରି । ଜଳ ଜମ୍ବାଳ ଆବିଳରେ ସ୍ନାନ ମନ ହରୁଛି । ଜଳ ନିର୍ମଳରେ ଆଦର ଆଦରଶୁଁ ପାରୁଛି । ଗମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କରି । ନର୍ତ୍ତକୀ ଠାବରୁ ଭଉଁରି ଶିକ୍ଷା ପରି ଏହାରି । ଅମୃତ ସଙ୍ଗତେ ହୋଇଛି ମିତ ମଧୁର ପଣେ । ବିଧୁର ସ୍ନେହକୁ ବିଧୁର କରେ ଶୀତଳ ଗୁଣେ । ......" ସ୍ତୁ ୭, ଲ: ବ: ।

### ଆକାଶ ବର୍ଣ୍ଣନା

ସନ୍ଧ୍ୟା ଗ୍ରୀଷ୍ମ ନିଶା ଚିତ୍ରଣରେ ମଝେ ମଝେ ମିଶି ରହିଥିଲେ ମଧ୍ୟ ନଗର ନଗରୀ ବର୍ଣ୍ଣନା ମଧ୍ୟରେ ତାହା ଅତ୍ୟନ୍ତ ଚମତ୍କାର ରୀତିରେ ସ୍ଥାନେ ସ୍ଥାନେ ଦେଖାଯାଏ । କୋଟିବ୍ରହ୍ମାଣ୍ଡସୁନ୍ଦରୀର ଜନ୍ମସ୍ଥାନ ଚମ୍ପା ନଗରୀର ଚିତ୍ତାକର୍ଷକ ଚିତ୍ରଣ ଭିତରେ ଆକାଶ ବର୍ଣ୍ଣନା ମଧ୍ୟ ରହିଛି । ଯଥା :—ଆକାଶ—"ବଡ଼ଶ୍ରୀ ବଡ଼ଶ୍ରୀ ଜନମନରେ । ହରିହସ୍ତ ହରିହସ୍ତ ଚିହ୍ନରେ । ବଇଜୟନ୍ତକୁ ଜିଣିବ ବୋଲି । ବଇଜୟନ୍ତୀରେ ଛନ୍ଦନ ଗୁଲି । ବିତାନ ଏସନ ପ୍ରସନ୍ନ ଧରେ । ଯେସନ ଗଗନ ନିଶା କାଳରେ । ଚନ୍ଦ୍ରମଣ୍ଡଳ ନରେ ପ୍ରକାଶିତ । ପୁଣି ତାର ତାର-ରାଜି ରାଜିତ । ......" ସ୍ତୁ ୨, କୋ: ବ୍ର: ସୁ: ।

ବୈଚିତ୍ର୍ୟମୟୀ ପ୍ରକୃତିର ବିଚିତ୍ରତା ସମ୍ବନ୍ଧରେ ଯୁଗ ଯୁଗ ଧରି କବିମାନେ ନିଜ ନିଜ କବିତାରେ ଶତ ଶତ ଚିତ୍ର ଅଙ୍କନ କରୁଥିଲେ ମଧ୍ୟ ପ୍ରକୃତିପେଟିକାନିହିତ ସୌନ୍ଦର୍ଯ୍ୟ-ଭଣ୍ଡାରର ଅବସାନ ଘଟେ ନାହିଁ ।

---

*"Their peal the merry horns rungour, A hundred voices joined the shout,"
(stag hunt in the High-lands) scott.

## ସଙ୍ଗୀତ

ମାନବ ମନ ଓ ହୃଦୟରେ ସଙ୍ଗୀତକଳାର ପ୍ରଭାବ ବେଶୀ ପଡ଼େ । କର୍ମକ୍ଳାନ୍ତ ମାନବର ଶ୍ରାନ୍ତି ଅପନୋଦନ କରି ଶାନ୍ତି ସନ୍ତୋଷ ଆଣେ ସଙ୍ଗୀତ । ନିସ୍ତେଜକୁ ସତେଜ କରିବାରେ, ଦୁଃଖ ଭିତରେ ସୁଖ ସନ୍ତୋଷ-ସୋତ ଉନ୍ମେଷ କରିବାରେ, ଅପ୍ରସନ୍ନ ପରିସ୍ଥିତିରେ ଆହ୍ଲାଦ ବାୟୁମଣ୍ଡଳ ସୃଜନ କରିବାରେ ସଙ୍ଗୀତ ହିଁ ସହାୟ ହୁଏ । * ଆମ୍ଭମାନଙ୍କର ସାମାଜିକ ପର୍ବପର୍ବାଣୀ, ଦେବଯାତ୍ରା, ବିବାହ ବ୍ରତ, ଯାଗ ଯଜ୍ଞ, ଯୁଦ୍ଧ ଅଭିଯାନ, ଜନ୍ମ ମୃତ୍ୟୁ, ରାଜଦରବାର, ରାଜାଭିଷେକ, ସଭାସମିତି ଇତ୍ୟାଦି ସମସ୍ତ ଶୁଭ ଅଶୁଭ କାର୍ଯ୍ୟରେ ସଙ୍ଗୀତକୁ ବାଦ୍ ଦିଆଯାଇ ନାହିଁ । କବି ଉପେନ୍ଦ୍ର ନିଜେ ସଙ୍ଗୀତରସିକ ଓ ପ୍ରବୀଣ ସଙ୍ଗୀତ-କଳାବନ୍ତ ଥିବା ହେତୁ ସଙ୍ଗୀତ-ଶାସ୍ତ୍ରର ପ୍ରାୟଶଃ ସମସ୍ତ ଲକ୍ଷଣରେ ନିଜ କାବ୍ୟ କବିତା ଅଲଙ୍କୃତ କରିଅଛନ୍ତି ।

### ସଙ୍ଗୀତଚର୍ଚ୍ଚାରେ ମୌଳିକତା

ଉପେନ୍ଦ୍ର ଭଞ୍ଜ ନିଜ ଗ୍ରନ୍ଥର ବିଭିନ୍ନ ବୃତ୍ତାନ୍ତକୁ ବିଭିନ୍ନ ରାଗ, ରସ, ସମୟ ଅନୁଯାୟୀ ବୋଧ ଛନ୍ଦ, ବୃତ୍ତି, ସ୍ୱର ଭିତରେ ସ୍ୱରନିୟମ, ଯତିନିୟମ ରାଗର ଆରୋହ ଅବରୋହ, ବାର୍ଜ୍ୟାବର୍ଜ୍ୟ, ଗ୍ରହ ଅଂଶ ନ୍ୟାସ ଯୋଗାଡ଼ି ଲୋକସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି । ଆମର ସଙ୍ଗୀତକୁ କେହି କେହି କାର୍ଣ୍ଣାଟକୀ କହନ୍ତି । ତାହା ଭ୍ରମାତ୍ମକ ବୋଲି ଆମର ସଙ୍ଗୀତ ବିଶାରଦମାନଙ୍କର ଧାରଣା । ଦେଶରୁଚି ଦୃଷ୍ଟିରେ ସଙ୍ଗୀତ ଗଢ଼ାଯାଇଥିବାରୁ ତାହା ଓଡ଼ିଶୀ ସଙ୍ଗୀତ ନାମରେ ଖ୍ୟାତ । ଭଞ୍ଜକବିଙ୍କ ରଚନାପ୍ରଣାଳୀରୁ ତାହା ପ୍ରମାଣିତ ହୁଏ । ଉପେନ୍ଦ୍ର ଭଞ୍ଜ ସଙ୍ଗୀତର ଚିରାଚରିତ ରୀତି ଓ ପଦ୍ଧତି ଅନୁସରଣ କରିଥିଲେ ମଧ୍ୟ କେତେଗୁଡ଼ିଏ ରାଗ, ବୃତ୍ତି, ବାଣୀ ଇତ୍ୟାଦି ସୃଷ୍ଟି କରି ଓଡ଼ିଶୀ ସଙ୍ଗୀତର ଶ୍ରୀ ସମ୍ପାଦନ କରିଅଛନ୍ତି ।

### ରାଗରାଗିଣୀ

ମଙ୍ଗଳଗୁଜ୍ଜରୀ, କେଦାରଚକ୍ରକେଳି ବାଣୀ, ମାଳବ (ଚୋଖି ବାଣୀ), ମଙ୍ଗଳବରାଡ଼ି, ମୁଖବରୀ-ବାଣୀ, ଗୁଜ୍ଜରୀ, ବସନ୍ତ, ଦେଶାକ୍ଷ, ମଙ୍ଗଳ, କଉଶିକ, ଶଙ୍କରାଭରଣ, ଆଷାଢ଼ଶୁକ୍ଳ ବାଣୀ, ବରାଡ଼ି, କାମୋଦୀ, ଘଣ୍ଟାରବ, ନଳିନୀଗୌଡ଼ା, ଚନ୍ଦ୍ରାକୋଶଳ, କାଳି, ରାମକେରୀ, କଳହଂସ କେଦାର, ଭୂପାଳ, କନଡ଼ା, କଲ୍ୟାଣଆହାରୀ, ଚନ୍ଦ୍ରାଭୈରବ, ଚନ୍ଦ୍ରାଦେଶାକ୍ଷ, କାଫିକାମୋଦି, ମାଳବରାଡ଼ି, କୁମ୍ଭକାମୋଦୀ, ପାହାଡ଼ିଆ କେଦାର, ବସନ୍ତ ବରାଡ଼ି, ବିଚିତ୍ର ଦେଶାକ୍ଷ, ସିନ୍ଧୁଦେଶାକ୍ଷ, ଚନ୍ଦ୍ରା ବରାଡ଼ି, ପଞ୍ଚମ ବରାଡ଼ି, କଲସା ବାଣୀ, ଛକିଆରୀ ଇତ୍ୟାଦି ଅସଂଖ୍ୟ ରାଗରାଗିଣୀ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କବିତାରେ ଦେଖାଯାଏ । ଏକମାତ୍ର "କୋଟିବ୍ରହ୍ମାଣ୍ଡସୁନ୍ଦରୀ" ରେ ଦିଆଯାଇଥିବା ବିଭିନ୍ନ ରାଗରାଗିଣୀ ଏଠାରେ ଉଲ୍ଲେଖ କରାଗଲା; ଇତର କାବ୍ୟରେ ଆହୁରି ଅସଂଖ୍ୟ ବିଭିନ୍ନ ରାଗରାଗିଣୀ ସନ୍ନିବେଶିତ ଅଛି ।

---

* "In sweet music is such art—
Killing care and grief of heart"—fletcher,

## ତାଳତାଳ—

କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଗ୍ର ୩୧, ୨୧—୩୭ ପଦରେ କବ ସଙ୍ଗୀତଶବ୍ଦାନ୍ତ ସୁନ୍ଦର ଆଲୋଚନା କରିଦେଇଛନ୍ତି । ସେଥିରେ ଶିବଙ୍କ ମଙ୍ଗଳ ବଚନରୁ ପ୍ରକଟିତ ଦଶତାଳ, ଶଏ ଏକ ତାଳ ମଧ୍ୟରୁ ଷଂହୁନନ୍ଦନ ତାଳ, ତାଳଦ୍ୱାର ପଞ୍ଚ, ଷଷ୍ଠ, ଅଷ୍ଟକଳା; ଶୁଦ୍ଧ, ସାଲଗ, ଗ୍ରସ୍ଥ, ଲଗ ଏବଂ ସୂଡ଼ ପ୍ରଭୃତି ଛନ୍ଦଲକ୍ଷଣ; ମେଦନୀ, ନନ୍ଦନୀ, ଯାବନୀ, ଦୀପିନୀ, ତାରାବଳୀ ପ୍ରଭୃତି ଲକ୍ଷଣ, ନିଷାଦ, ଋଷଭ, ଗାନ୍ଧାର, ମଧ୍ୟମ, ଷଡ଼୍‌ଜ, ଧୈବତ, ପଞ୍ଚମ ସ୍ୱର ପ୍ରଭୃତି ପ୍ରକାଶ ପାଏ । ତତ୍‌ପରେ ଗୃଣ ପ୍ରକାର ନୃତ୍ୟ ଗୀତ, ଗୀତର ସାବସ୍ଥା, ଧ୍ରୁବସ୍ଥ ପ୍ରଭୃତି ରାଗରାଗିଣୀ ଭିତରେ ବସନ୍ତ ରାଗ, ସୋମ ରାଗ, କେଦାର ରାଗ ପ୍ରଭୃତି ତଥ୍ୟ ସେଥିରେ ପ୍ରକାଶ କରାଯାଇଛି । ନର୍ତ୍ତକୀମାନଙ୍କ ନୃତ୍ୟ, ନୃତ୍ୟରେ ସେମାନଙ୍କ ଜନ ମନୋହାରିଣୀ ନାନା ଭଙ୍ଗୀ, ସ୍ୱରର ଚିତ୍ତାକର୍ଷକ ଚରଣ ଦେଇ, ପଦର ପଦରେ କବ ସଙ୍ଗୀତ-ସାହିତ୍ୟ-ଚର୍ଚ୍ଚାର ବ୍ୟବହାର କରିଅଛନ୍ତି । ସେଥିରୁ ୨/୩ଟି ପଦ ମାତ୍ର ନମୁନ ସ୍ୱରୂପ ଏଠାରେ ଉଦ୍ଧୃତ ହେଲା—"ସେ କ କଇଲାସ ତାଳରେ ପ୍ରକାଶ ଆଦ ଯତ ମନ ମୋହ ଯେ । ଶୋଭନୀ ସାସ୍ଥ ସିଦ୍ଧ ମଠାଲଙ୍କନ ଜ୍ଞାନ ଧ୍ୟାନ ରୂପକରୁ ଯେ । ନିପୁଟ । ଏକ ତାଳୀ ଯୁକ୍ତ କାହିଁ ଯେ । ସମ୍ମୋନ ଅଡ଼୍ଡ଼ ଶିବ ବଚନରେ ଗଉଣ ପ୍ରକଟ ସନ୍ଧି ଯେ । କୋ: ବ୍ର: ସୁ: ।

'ବନ୍ଦତ ଷଂହୁନନ୍ଦନ ପୁଣି ନଲ କୁବର ( ଫୁଙ୍କା ବାଦ୍ୟ ) ବିଳାସ ଇଛି ଯେ । ନନ୍ଦୀ ପ୍ରମୁଖରେ ଶ୍ଳୋକ ବ୍ୟାଖ୍ୟାତରେ ଲଘୁ ଗୁରୁ ଉପୁଜୁଛି ଯେ । ଝିମିଝ । ଦ୍ରୁତରେ ବିରମ ଅଛି ଯେ । ନଭ ପ୍ରାପ୍ତ ପଞ୍ଚ ଷଷ୍ଠ ଅଷ୍ଟକଳା ଚନ୍ଦ୍ରବିମ୍ବ ପ୍ରକାଶୁଛି ଯେ, ।" "କ ଅଯୋଧ୍ୟା ରାମ ଲକ୍ଷ୍ମଣ ବନ୍ଦେ ସେ ବାଦକ କୁଳେ ଅଗମ୍ୟ ଯେ । ଶୁଦ୍ଧ ସାଲଗ ଗ୍ରସ୍ଥ ଲଗ ବଧିରେ ସୁନ୍ଦର ନିଦାନ ଧାମ ଯେ ।

> ଆହତାନାହତ କେତନେ କ୍ଷମ ଯେ ।
> ମେଦନୀ-ନନ୍ଦନୀ ପାବନୀ ଦୀପିନୀ ତାରାବଳୀ ଯୁକ୍ତେ ରମ୍ୟ ଯେ ।"
>
> ଇତ୍ୟାଦ ଗ୍ର ୩୧, ପ୨୧-୩୭, କୋ: ବ୍ର: ସୁ: ।

## ବିବିଧ ବାଦ୍ୟ ଓ ରାଗରାଗିଣୀର ଦୃଷ୍ଟାନ୍ତ

ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ଓଡ଼ିଶାରେ ବିବିଧ ବାଦ୍ୟ ଓ ବାଦ୍ୟଯନ୍ତ୍ରର ପ୍ରଚଳନ ଥିଲା । ନାଗରା, ଦୁନ୍ଦୁଭି, ପଟହ, ଡମରୁ, ଶଙ୍ଖ, ଘଣ୍ଟା, କାହାଳୀ, ତୂରୀ, ଭେରୀ, ମହୁରୀ, କଂସାଳ, ତାଳ, କର୍ଣ୍ଣାଳ, ଡମ୍ଫା, ମୁରଜ, ଡିଣ୍ଡିମ, ଅମୃତୀ, ବେଣୁ, ବୀଣା, ମୃଦଙ୍ଗ, ମର୍ଦ୍ଦଳ ଇତ୍ୟାଦ ନାମ ନିମ୍ନୋକ୍ତ ଦୃଷ୍ଟାନ୍ତରୁ ସୂଚିତ ହୁଏ । ସଙ୍ଗୀତ ବେଳେ କଂସାଳ, ତାଳ, ମୃଦଙ୍ଗ, ମର୍ଦ୍ଦଳ, ବେଣୁ ବୀଣାର ବହୁଳ ବ୍ୟବହାର, ଦେବଯାତ୍ରା, ଶୋଭାଯାତ୍ରା ଓ ଇତର ପର୍ବପର୍ବାଣିରେ ଅନ୍ୟାନ୍ୟ ବାଦ୍ୟଯନ୍ତ୍ରର ବ୍ୟବହାର ହେଉଥିବା ଜଣାଯାଏ ।

> "ଶଙ୍ଖ ଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମହୁରୀ,
> ଘଣ୍ଟା ପଟହ କଂସାଳ ତାଳ ତୂରୀ ଭେରୀ ଯେ ।
> କର୍ଣ୍ଣାଳ କାହାଳୀ ବଜଘୋଷ ବେଣୁ ଡମ୍ଫା,
> ମୁରଜ ଡିଣ୍ଡିମ ଦୁନ୍ଦୁଭିରେ ମଞ୍ଜୀ ଜମ୍ଫା ।
> ବୀଣା ରବା ତାଳ ତାଳ ମୃଦଙ୍ଗ ମର୍ଦ୍ଦଳ ।
> ସ୍ୱର ମଣ୍ଡଳ ଅମୃତୀ ବାଏ ଗୁଣିକୁଳ ଯେ ।" ଲ: ବ: ।

"ଅସ୍ତୁ ଏ ଇଙ୍ଗିତ ସଙ୍ଗୀତ ଜାଣେ ସେ କଳା ପ୍ରସାରିଲ ପରୀ ରେ ।" ଇତ୍ୟାଦ, ଲ: ବ: ।

ରହି ନ ପାରନ୍ତି ବଧୂ ନିଷେଧକୁ ଭେକ ତାହାଙ୍କ ଶବଦ ।
ଶୁଣନ୍ତି ମଣନ୍ତି କାହ୍ନୁ ଉଆଇଲା ଅନଙ୍ଗ ତେଲଙ୍ଗୀ ବାଦ୍ୟ ।" ଲ: ବ: ।
ରାମଚନ୍ଦ୍ରଙ୍କ ଅଭିଷେକୋତ୍ସବ ଉପଲକ୍ଷେ ହେଉଥିବା ବାଦ୍ୟ ଗୀତ ଇତ୍ୟାଦି—

"ବାଦ୍ୟମାନ ବଳି ଶୁଭେ ରସନାର ସ୍ୱନ
ବାରନାରୀ ସାର ନୃତ୍ୟ ଗୀତର ବିଧାନ ଯେ ।"
× × ×
ବ୍ୟକ୍ତ ଗନ୍ଧର୍ବ ଗାୟକ ରସାଳେ ମାଧୁର୍ଯ୍ୟ ।
ବସନ୍ତ ମଙ୍ଗଳ ରାଗେ ଏକ ଭାବେ ଭଜ ଯେ ।"
ଛା୫୬, ବୈ: ବି: ।

"ବିଶ୍ୱସୀଏ ଗୀତ ଗାଇ କେ ରମା ବୀଣା ବଜାଇ ଥୋଇଅଛି ଭାବ ଗୃହି କୁଚୋରମାଳୀ । ବାଜନ୍ତ କିଙ୍କିଣୀ ସ୍ୱର ମଣିତ ଧାଉଁ ପ୍ରଗ୍ରର ଆମ୍ଭଠାବରେ ଦେଲ ଭାଳ ଗମିଲ ଆଳୀ । ବିଷୋର ସେ ରାଗରେ ରାଗ । ବୋଲୁଥିଲେ ରାମକେଶ୍ୱ ର ଲ ସଂଯୋଗ ।" ଛା୯, ବୈ: ବି: ।

ସଙ୍ଗୀତମାଧୁର୍ଯ୍ୟ—

ଅରଫିୟୁସ୍ ଯେତେବେଳେ ବୀଣାବାଦନ କରି ପଞ୍ଚମତାନରେ ଗାନ କରନ୍ତି, ସେତେବେଳେ ଗଛ ପଥର, ପଦ, ପର୍ବତ, ନିର୍ଝରିଣୀ, ପଶୁ ପକ୍ଷୀ ବଶୀଭୂତ ହୋଇ ପଡ଼ନ୍ତି ବୋଲି ଗ୍ରୀସ୍ ଓ ଇଂରେଜୀ ସାହିତ୍ୟରେ ଗଦ୍ୟ, ପଦ୍ୟ, କାହାଣୀ, ଉପନ୍ୟାସରେ ଘନ ଘନ ପ୍ରମାଣ ପାଇଥାଏ ।

Orpheus with his lute made trees
Ar d the mountain-tops that freeze
Bow themselves when he did sing !
To his music, plants and flowers
ever spring;"—J. Fletcher.

"ଶିଶୁର୍ବେତ୍ତି ପଶୁର୍ବେତ୍ତି ବେତ୍ତି ଗୀତରସଂ ଫଣି"
"ମଧୁକରୈରପବାଦକରୈରିବସ୍ମୃତିଭୁବଃ ପଥିକା ହରିଣା ଇବ,
କଲତୟା ବଚସଃ ପରିବାଦିନୀ ସ୍ୱରଜିତା ରଜିତା ବଶମାୟଯୁଃ ।" (ମାଘ)

ଉପେନ୍ଦ୍ର ମଧ୍ୟ ଠିକ ସେହିପରି କହନ୍ତି :—

"ମୋହି ପାରଇ ଜଗତ ଯେଉଁ ଗୀତ ଆଲିଙ୍ଗିତ ସ୍ୱର ସପତ
ଛକିତ ଲୋକତ ଯହିଁରେ ପନ୍ନଗ ଅନଙ୍ଗ ତହିଁତ ଗୁପତ ।
ବିହଗ ପଶୁ ସ୍ୱରେ ସ୍ୱରେ ଧଇଲେ ।
ପ୍ରଶସ୍ତ କରି ବସନ୍ତ ରାଗ ଧରି ସବ ଲୋକେ ତାହା ଗାଇଲେ ।"
ଛା୭, କୋ: ବ୍ର: ସୁ: ।

ମିଶର ରାଣୀ 'କ୍ଲିଓପାଟ୍ରା' ଆଣ୍ଟୋନିଙ୍କୁ ଭେଟିବା ପାଇଁ (ପ୍ଲୁଟାର୍କଙ୍କ ଲେଖନୀରୁ) ଯେଉଁପରି ଅପୂର୍ବ ଶୋଭାସମ୍ପଦରେ ବିମଣ୍ଡିତ ହୋଇ ସେବକ, ସେବିକା ପ୍ରଭୃତି ଦଳ ବଳ ସହିତ ଅତ୍ୟନ୍ତ ସମାରୋହରେ ଧୀରେ ଧୀରେ ଅଗ୍ରସର ହେଉଥିଲେ, ଲାବଣ୍ୟବତୀ ଶୋଭା-ସରୋବରରେ ଶୁଭ୍ର ସତେଜ ସରୋଜବତ୍ ମୃଦୁ ଅନିଳ ହିଲ୍ଲୋଳ ସ୍ପର୍ଶରେ ଢଳଢଳ ହୋଇ ଠିକ୍ ସେହିପରି ସେବିକା, ସହଚରୀ ସହିତ ଅତ୍ୟନ୍ତ ସମାରୋହରେ ଚନ୍ଦ୍ରଭାନୁଙ୍କୁ ଭେଟିବା ପାଇଁ ରାମେଶ୍ୱର ଦେବାଳୟକୁ ସହର୍ଷେ ବିଜେ କରନ୍ତି। ଲାବଣ୍ୟବତୀଙ୍କର ଏକ ସମୟରେ ଦେବ ଦର୍ଶନ ଓ ଚନ୍ଦ୍ରଭାନୁ ଦର୍ଶନଲାଳସା ରହିଛି। କବି ସେଥିରେ ପ୍ରଥମତଃ ମାତୃଭୂମିର ଦୁର୍ଲଭ ଶିଳ୍ପାଗାର ଓ ରାଜକୀୟ ଆଡ଼ମ୍ବର, ଦ୍ୱିତୀୟତଃ ବିଶ୍ୱବନ୍ଦନୀୟ ସଙ୍ଗୀତକୁ ବାଦ୍ ଦେଇ ନାହାନ୍ତି। ଯଥା:—

"ଅତନୁ ସ୍ୟନ୍ଦନ ଚନ୍ଦନ ବନ୍ଦନ ଶୀତଳ ତନୁକୁ ରଞ୍ଜାଇ।
ପହଞ୍ଚି ମଣାଇ ସଙ୍ଗୀତ ପ୍ରବୀଣା-ସଙ୍ଗିନୀଏ ବୀଣା ବଜାଇ।
କୁମାର। ଥିବା ସ୍ଥାନକୁ ଅନୁସର।
ଶୋଭାଙ୍ଗୀଙ୍କ ପାନ ଭଙ୍ଗି ଦେଇ ମନ ତୋଷୁଅଛି ମନ୍ତ୍ରୀ-କୁମାରୀ।"
ଇତ୍ୟାଦି। ଲା: ବ:।

## ନୃତ୍ୟ

ଭାରତର ନୃତ୍ୟକଳା ଜଗତରେ ଅତୁଳ। ଏହି ବିଂଶଶତାବ୍ଦୀରେ ମଧ୍ୟ ସୁସଭ୍ୟ ଦେଶମାନଙ୍କରେ ଭାରତୀୟ ନୃତ୍ୟକଳା ପ୍ରଶଂସ୍ୟ ଓ ଦର୍ଶନୀୟ ହୁଏ। ଭାରତର ନର୍ତ୍ତକ, ନର୍ତ୍ତକୀମାନେ ଦେଶ ଦେଶାନ୍ତର ଭ୍ରମଣ କରି ଭାରତୀୟ ବିଭିନ୍ନ ନୃତ୍ୟ ପରିପାଟୀରେ ଜଗତବାସୀଙ୍କୁ ମୁଗ୍ଧ କରନ୍ତି। କବି ନୃତ୍ୟପରିପାଟୀର ପ୍ରଦର୍ଶନୀ ଚମତ୍କାରରୀତିରେ ନିଜର ବିଭିନ୍ନ ଗ୍ରନ୍ଥରେ ଉଦ୍‌ଘାଟନ କରି ପାଠକ ପାଠିକାଙ୍କ ହୃଦୟ ରଞ୍ଜନ କରନ୍ତି। ଯଥା :—

"ଆଗେ ପ୍ରସରିବା ଅପସରିବା କି ପୁଷ୍ପବଲ୍ଲୀ ତଳେ ବାତେ ଯେ।
ଅଳକା ଅଳି ଆଳୀ କି ପାନ ଲୋଭେ କର୍ମେ ସ୍ୱେଦ ମଧୁ ଜାତେ ଯେ।
କଟୀ କି। ସେ ହସ୍ତକୁ ଉପେଲତେ ଯେ।
ଫନ୍ଦର ବାରେ ଧଇର୍ଯ୍ୟ ପଙ୍କଜକୁ ଉପାନ୍ତ ନେବାର ମନ୍ତ୍ରେ ଯେ।"

"ଟରୁନେ ତର୍ଜନୀ ଦେଇ ଠାରନ୍ତି କି ଏ ଓଷ୍ଠ ମଧୁର ଠାବ ଯେ।
ମୃଦୁ ସ୍ମିତ ଜାତ ସାକ୍ଷାତ କରଇ ମୃତ ଲୋକେ ଦେଇ ଜୀବ ଯେ।
କଟାକ୍ଷେ। ଲାବଣ୍ୟଲକ୍ଷ୍ମୀ ସମ୍ଭବ ଯେ।
ଭଙ୍ଗ ଭଙ୍ଗୀ ଅଙ୍ଗୀକାର ସାଗରୀ ସେ ଭାଙ୍ଗଇ ବିବେକ ନାବ ଯେ।"

"ପଦଯୁଗ ବେଗ ବେଗ ପ୍ରଚଳନେ ବାଜନ୍ତି ମଞ୍ଜୁ ମଞ୍ଜୀର ଯେ।
ଦ୍ୱିରଦ ମନ୍ଥର ମନ୍ଥନ କଣ୍ଟକ ଦେଉଛନ୍ତି ବୀର ଭୂର ଯେ।
ନର୍ତ୍ତକୀ। ଲୟୁ ଜୁରି ମୁନିଙ୍କର ଯେ।
ଲୁଟି ହୋଇଅଛି ମାନ ବଡ଼ପଣ କୁଞ୍ଚୁରାଜା ଠାବୁ ଯାଉ ଯେ।" କୋ: ବ୍ର: ସୁ:।

ଉପେନ୍ଦ୍ରଙ୍କ ପର ବିଖ୍ୟାତ (ପାଶ୍ଚାତ୍ୟ) ଇଂରେଜ କବି ନୃତ୍ୟ-କଳା ସମ୍ବନ୍ଧରେ ଯାହା କହିଥିଲେ ମଧ୍ୟ, କେହି ତାହାଦ୍ୱାରା ପ୍ରଭାବିତ ନୁହେଁ । ସ୍ୱନାମଧନ୍ୟ ବିଜ୍ଞ ବ୍ୟକ୍ତିମାନେ ବାସ୍ତବ କଥା ବର୍ଣ୍ଣନା କରୁ କରୁ ସେମାନଙ୍କ ବର୍ଣ୍ଣନାସମ୍ବଳିତ ଭାବଭଙ୍ଗୀରେ ସାମଞ୍ଜସ୍ୟ ବେଳେ ବେଳେ ଦେଖାଯିବା ସ୍ୱାଭାବିକ । ଯଥା ବର୍ଣ୍ଣନାରେ ସଙ୍ଗୀତ, ନୃତ୍ୟକଳା—"ହସ୍ତବଳୟ ପଦ କଟକର, ସ୍ୱନ ପ୍ରଖର ମର୍ଦ୍ଦଳ ଝର୍ଝର । ସରସ ବଚନ ପଞ୍ଚମ ସ୍ୱର, ଲକ୍ଷଣ ନର୍ତ୍ତକ ନର୍ତ୍ତନ କର । ବଦନ ସଘନ୍ତ । ଚଳନ ରଞ୍ଜନ ଅଞ୍ଜନ ସତ ।"

ଅ: ର: ତ: ।

ନୀଳାଚଳ ଉପଲକ୍ଷେ

ବଧୂର ଚତେ ମଧୂର ଜତ ଗାଆନ୍ତି ସାଧୂ ।
ଆଗତ ହୋଇଣ ନାଚନ୍ତି ଯହିଁ ଗଣିକା ବଧୂ ।

× × ×

ଗୋପୀ ଗୋପୀନାଥ ସୁବେଶ ସବୁ ଆବେଶ ନୃତ୍ୟେ ।
ଯତ ବନ୍ଦବନ୍ଧ ମାଗଧ ତୋଷେ ଚନ୍ଦ୍ର କବିତ୍ୱେ ।" ଇତ୍ୟାଦି । ର: ହା: ।

## ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା

"ଘାଗୁଡ଼ି ନୂପୁର ଖଞ୍ଜି କଟିପଦେ ବେଣୀ ରଞ୍ଜି ଫୁଲ ଲମ୍ବାଇ ।
ଘଟଣ କପାଳେ ଦେଇ ଫଗୁ ଗୋପୀ ଗୋପୀ କରତାଳ ବଜାଇ ।
ଘନଶ୍ୟାମଙ୍କୁ ।
ଘୋଷି ଥେଇ ଥେଇ ନଚାଇ ।" ଇତ୍ୟାଦି । ଗ୍ରୁ: ଭୂ: ।

———

## ଭକ୍ତିପ୍ରବଣତା

"Ideas constitute a force among people as well as among individuals."

*Andra Thiers.*

ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥରେ ଈଶ୍ୱରଭକ୍ତି ଦୃଷ୍ଟାନ୍ତର ଅଭାବ ନାହିଁ । ସମସ୍ତ ଦୃଷ୍ଟାନ୍ତ ଦର୍ଶାଇବାକୁ ହେଲେ ଭଞ୍ଜ-ସାହିତ୍ୟର ଊନ ଚତୁର୍ଥାଂଶ ଏଥିରେ ଥୋଇବାକୁ ହେବ । ବିଶ୍ୱ-ସାହିତ୍ୟକୁ ଭଞ୍ଜଙ୍କ ଅବଦାନ ଅସୀମ । ତାହା ସ୍ପଷ୍ଟ କରିବା ପାଇଁ ଭଞ୍ଜ-ସାହିତ୍ୟ-ରତ୍ନାକର ଗର୍ଭରୁ ଯେତେ ଦୃଷ୍ଟାନ୍ତ-ରତ୍ନ ଆହରଣ କରାଯାଇ ପାରିବ, ତେତେ ଅଧିକ । ତାହା କରି ପ୍ରବନ୍ଧର କଳେବର ବୃଦ୍ଧି କରିବା ବର୍ତ୍ତମାନ ଆମ୍ଭମାନଙ୍କ ଅଭିପ୍ରାୟ ନୁହେଁ । କବିଙ୍କ ବିଖ୍ୟାତ କାବ୍ୟ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ', 'ବୈଦେହୀଶ ବିଳାସ' ଓ 'ଲାବଣ୍ୟବତୀ'ରୁ ସାଧାରଣ କେତେକ ଦୃଷ୍ଟାନ୍ତ ଏବଂ ଅନ୍ୟାନ୍ୟ ଗ୍ରନ୍ଥରୁ ପଦେ ଅଧେ ଏଥିରେ ସନ୍ନିବେଶିତ ହେଲା । ସେଥିରେ କବିଙ୍କ ଭାବର ବୈଚିତ୍ର୍ୟ, ଭାଷାର ସୌନ୍ଦର୍ଯ୍ୟ, ଦେଶପ୍ରେମ ଓ ଅଗାଧ ପାଣ୍ଡିତ୍ୟ କିପରି ପ୍ରାଞ୍ଜଳ ଅଥଚ ସ୍ୱାଭାବିକ ଶୈଳୀରେ ଫୁଟି ପାରିଛି, ତାହା ହୃଦୟବାନ୍ ପାଠକବର୍ଗଙ୍କ ଅବବୋଧ ସକାଶେ ନିମ୍ନରେ ଦିଆଗଲା :—

ଦୃଷ୍ଟାନ୍ତ—୧

"ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ହେ ॥
ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ ।
ସାକ୍ଷୀ ପକ୍ଷୀ କରନ୍ତି ପ୍ରତିମାରୂପେ ଥାଇ ଯେ ॥
ଯେ ବ୍ରହ୍ମହତ୍ୟା-ପାତକ-ନିପାତକ ମହୀ ।
କପାଳମୋଚନ ତ୍ରିଲୋଚନ ସାକ୍ଷୀ ଯହିଁ ଯେ ॥
ଆସି କାଶୀଶ୍ୱର ବାସ କଲେ ଏହା ଜାଣି ।
ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକ ମଣି ହେ ॥
ଏଣୁ କ୍ଷେତ୍ର ନରେନ୍ଦ୍ର ପଦତ ସମ୍ଭାବିତ ।
ବିନାଶେ ଭୁଜଙ୍ଗ ଦୋଷ ତାକୁ କେତେ ମାତ୍ର ହେ ॥
ଅବିଦ୍ୟା ବିଷମ ଆଶୀବିଷଘାତୀ କରେ ।
ଜ୍ଞାନାଜ୍ଞାନେ ପରାଧୀନେ ସେ ସ୍ଥାନ ଗମନେ ହେ ॥
ଶ୍ରୀ ମହାପ୍ରସାଦ ଗଦା ପଦ ଘଣ୍ଟା ଘୋଷ ।
ଭକ୍ଷଣେ ଶ୍ରବଣେ ଯେ କଲିବିଷ ବିଷ ନାଶ ହେ ॥

ଉନ୍ନତ ପ୍ରାସାଦରାଜ ପତାକା ଉଡ଼ାଇ ।
ଏ ପ୍ରଦେଶେ ଯମବର୍ତ୍ତୀପଣ ନାହିଁ ନାହିଁ ହେ ॥
ବଟରାଜା ଶାଖା ଯେନ ନିଗମ ସାକ୍ଷାତ ।
ପାପ ତାପ ପଶୁନାଶ ସୁକର୍ମ ଉଦିତ ଯେ ॥
ସେ ଦୁର୍ଗ-ପରିଖା ତୀର୍ଥରାଜ ଗର୍ଜନରେ ।
କହେ ଅବଗାହେ ପାପବୃନ୍ଦ ଦହନରେ ହେ ॥
ଦହି ସବୁ ବାଡ଼ବରେ ଦେବ ଏ ପକାଇ ।
ଏ ଦରବଣରୁ ଦୂରୁ ଦୂରେ ପଳାଇ ହେ ॥

ଛାଂ ୧, କୋ: ବ୍ର: ସୁ: ।

ତାତ୍ପର୍ଯ୍ୟ—

ଭାରତବର୍ଷରେ ପୁଣ୍ୟଧାମ ପୁରୁଷୋତ୍ତମ । ସ୍ୱୟଂ ନାରାୟଣ ପୁରୁଷୋତ୍ତମ ନାମରେ ସେଠାରେ ଅବତୀର୍ଣ୍ଣ ହୋଇଥିବାରୁ ସ୍ଥାନର ନାମ ପୁରୁଷୋତ୍ତମ ହୋଇଅଛି । ଚାରି ପ୍ରକାର ମୁକ୍ତି— ସାମୀପ୍ୟ, ସାଲୋକ୍ୟ, ସାଯୁଜ୍ୟ, ସାରୂପ୍ୟ ସେଠାରେ ମିଳେ । ଭୁଷଣ୍ଡ କାକ ରୋହିଣୀ କୁଣ୍ଡରେ ଚତୁର୍ଭୁଜ ହୋଇ ବସି ଅନବରତ ତାହାର ସାକ୍ଷ୍ୟ ଦେଉଅଛି । ସେଠାରେ ବ୍ରହ୍ମହତ୍ୟା ପାତକ ନପାତ ହୁଏ । ସ୍ୱୟମ୍ଭୁ ସ୍ୱୟଂ ସେଠାରେ ବିଜେ କରି ତାହାର ସାକ୍ଷ୍ୟ ଦିଅନ୍ତି । ( ମହାଦେବ ଜଣେ ବ୍ରାହ୍ମଣଙ୍କୁ ମୁଣ୍ଡ ମାଳ ମାଳ ଦେଇଥିଲେ । ବ୍ରହ୍ମହତ୍ୟା ଦୋଷରୁ ତାହାର କପାଳ ମହାଦେବଙ୍କ ହାତରେ ଲାଗିଲା, ଛାଡ଼ିଲା ନାହିଁ । ଶ୍ରୀକ୍ଷେତ୍ର ଦର୍ଶନରେ ସେ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତ ହେଲେ, କପାଳ ଛାଡ଼ିଲା । ) ବଟ ପୁରୁଷ ଦୋଷ, ଅଜ୍ଞାନ-ଆଶୌଚ, କଳିବିଷ ବିଷ ଶ୍ରୀ ମହାପ୍ରସାଦ ଚବ, ପଦ, ଘଣ୍ଟଘୋଷ, ଭକ୍ଷଣ ଓ ଶ୍ରବଣରେ ନାଶ ଯାଏ । କ୍ଷେତ୍ରରାଜ ପଦ ଶ୍ରୀକ୍ଷେତ୍ରଠାରେ ବିଶେଷ ଭାବରେ ପ୍ରଯୁଜ୍ୟ । ପ୍ରାସାଦରାଜର ପତାକା ଫରଫର ଉଡ଼ି କହେ—"ଏ ପ୍ରଦେଶରେ ଯମର ଭୟ ନାହିଁ ।" ଯଜ୍ଞରେ ପଶୁବଧ କଲେ ସୁଫଳ ମିଳେ, ସେଠାରେ କିନ୍ତୁ କଳିବଟ ପାପତାପ ନଷ୍ଟ କରି ସୁଫଳ ଦିଏ । ସେହି ଗଡ଼ର ଗଡ଼ଖାଇ ଭାବରେ ଥାଇ ତୀର୍ଥରାଜ ଗର୍ଜ୍ଜନ ଛଳରେ ଘୋଷଣା ଦିଏ- "ହେ ଯାତ୍ରିବୃନ୍ଦ ! ଏଥିରେ ସ୍ନାନ କରି ପାପ ତାପ ଧୌତ କର ।"

"ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ ।
ଚାରିବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ହେ ॥
ଭକ୍ତିଦେବୀ ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ ।
ବୈଷ୍ଣବ ବିହୀନେ କେ ବା ଜାଣିବ ସଂସାରେ ହେ ॥
ପାଦେ ବନ୍ଦେ ସାର୍ବଭୌମ ବୋଲିବା କି ଯଶ ।
ବୃଷାସନଙ୍କର ଶିର ଲାଗିବାକୁ ଆଶ ହେ ।।" ୧୪, କୋ: ବ୍ର: ସୁ: ।

ସେହି କମ୍ବୁକଟକ (ଶଙ୍ଖକ୍ଷେତ୍ର) ରାଜାଙ୍କ ନାମ ଜଗନ୍ନାଥ । ସେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର— ଏହି ଚାରିବର୍ଣ୍ଣଙ୍କୁ ଧର୍ମ, ଅର୍ଥ, କାମ' ମୋକ୍ଷ— ଚତୁର୍ବର୍ଗ ଫଳ ଦିଅନ୍ତି । ବୈଷ୍ଣବମାନଙ୍କ ମତରେ 'ଜଗତ୍' ଶବ୍ଦର ଅର୍ଥ ରାଧା, 'ନାଥ' ଶବ୍ଦର ଅର୍ଥ କୃଷ୍ଣ । 'ଜଗନ୍ନାଥ'ର ଅର୍ଥ ହେଲା ରାଧାକୃଷ୍ଣ । ଏ ଅର୍ଥ ବୈଷ୍ଣବଙ୍କ ପକ୍ଷରେ ହିଁ ସମ୍ଭବ, ଅନ୍ୟମାନଙ୍କ ପକ୍ଷରେ ନୁହେ । ଯେଉଁ ସମ୍ରାଟଙ୍କର ଏପରି ମହିମା, ଯାହାଙ୍କ ପାଦ ସ୍ପର୍ଶ କରିବାକୁ ସ୍ୱୟଂ ମହାଦେବ ଆଶା କରିଛନ୍ତି, ସେହି ପାଦ ମୁଁ ବନ୍ଦୁଅଛି କହିବା କ'ଣ ବଡ଼କଥା ?

"ଯାହା କଟାକ୍ଷ-କୁଠାର ପତନ ମାତରେ ।
ଅନେକ ଦୁଃଖ-ଅନୋକହକୁ ଛେଦିପାରେ ହେ ॥
ସେହି ପାଦ-ପଦ୍ମାସମ ପାଟ ମହାଦେଈ ।
ଅଷ୍ଟ ଐଶ୍ୱର୍ଯ୍ୟ-ଦାୟିନୀ ଅଷ୍ଟଶକ୍ତି ସେବ ହେ ॥
ଭରସା କର ଆସନ୍ତି ଦୂରଦେଶୁଁ ପ୍ରାଣୀ ।
ଆରତଭଞ୍ଜନ ପାନବନ୍ଧୁ ନାମ ଶୁଣି ହେ ॥
କରଯୋଡ଼ ଗ୍ରୀମୁରେ ଜଣାଇ ଖଗେଶ୍ୱର ।
ଆର୍ତ୍ତଜନ ଗୁହାରିକି ସାବଧାନ ହେବ ହେ ॥" ୧୮,ଛା ୧, କୋ.ବ୍ର:ସୁ: ।

ଯାହାର କଟାକ୍ଷକୁଠାର ଦୁଃଖ-ଅନୋକହ (ବୃକ୍ଷ)କୁ ଛେଦ ପାରେ, ସେହି ଜଗନ୍ନାଥଙ୍କ ପାଦ-ପଦ୍ମରେ ଅଷ୍ଟଐଶ୍ୱର୍ଯ୍ୟ—ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ, କାମାବସାୟିତା ଦାୟିନୀ ବିମଳା ପ୍ରଭୃତି ଅଷ୍ଟମହାଦେବୀବୃନ୍ଦ ଭଗବାନଙ୍କର ସେବା କରୁଅଛନ୍ତି। ଆର୍ତ୍ତଭଞ୍ଜନ ଦୀନବନ୍ଧୁ ନାମ ଶ୍ରବଣରେ ଦୂର ସ୍ଥାନରୁ ଯାତ୍ରୀ ଅଜାଡ଼ି ହୋଇ ଆସନ୍ତି । 'ଆର୍ତ୍ତଜନଙ୍କ ଗୁହାରିକୁ ସାବଧାନ ହୁଅନ୍ତୁ'—ଏହି କଥା ଗରୁଡ଼ ଶ୍ରୀମୁଖରେ ଦଣ୍ଡାୟମାନ ରହି ଅହରହ ନିବେଦନ କରନ୍ତି ।

କୋଟି-କନ୍ଦର୍ପ-ଲାବଣ୍ୟ ମୂର୍ତ୍ତି ଦରଶନ ।
ଦେବାକୁ ସୁବେଶେ ବିଜେ ରତ୍ନସିଂହାସନ ॥
ଶିରେ ହେମ-ରଚିତ ମୁକୁଟ ସପ୍ତ ଶାଖା ।
କରୁଣାସିନ୍ଧୁରେ କି ବଡ଼ବାନଳ ଶିଖା ॥
କମାଣି ସାର୍ଥ ନୋହିବ ଏମନ୍ତ ବଙ୍କୁର ।
ପୁଣି ମଞ୍ଜୁଳ କୁଣ୍ଡଳ ମକର ଆକାର ॥
ପ୍ରବାଳ ତରୁଣୀ ଦୃଷ୍ଟି ରଙ୍ଗାଧରେ ଅଛି ।
ବନେ ସର୍ବ ଲାବଣ୍ୟଲକ୍ଷ୍ମୀ ସମ୍ଭବିଛି ॥
ଦଶ ଅବତାର ଲୀଳା ଯାତ୍ରା ବିରଚନ ।
ଜନଙ୍କୁ ଦେଖାନ୍ତି ସ୍ୱଗାତ୍ରର କଥାମାନ ॥
ସ୍ନାନ ଗୁଣ୍ଡିଚା ଏ ଦେନି ସ୍ୱୟଂ ଲୀଳା ଯାର ।
ପଣ୍ଡିତ ବନ ଅର୍ଥେ ପ୍ରାସାଦୁଁ ବାହାର ହେ ॥
ଜ୍ୟେଷ୍ଠ ପୌର୍ଣ୍ଣମାସୀ ପୂର୍ବାଷାଢ଼ା ଅବଶେଷେ ।
ସେବକ ଜନ୍ମରେ ମିଳି ମହାପ୍ରଭୁ ପାଶେ ॥
ସେ କାଳକୁ ଅନୁସରି ଯାତ୍ରୀ ନର ନାରୀ ।
ଯେ ଯାହାର କାର୍ଯ୍ୟକର୍ମ ଇତ୍ୟ ହୋଇ ସରି ॥
ହରି ହରି-ଦ୍ୱାରେ ମିଳି ହରିଧ୍ୱନି କଲେ ।
ହଣ୍ଡିତ ପଣ୍ଡିତ ଭକ୍ତରେ ରହି ହେଲେ ॥
ବେଢ଼ିଲ ଭୂଲୀ ପାହାଡ଼ ବିଜୟ ନମିତ୍ତେ ।
ବାଜିଲ ଘେଣ୍ଟା ମୃଦଙ୍ଗ ଢୋଲ ସହିତେ ॥
କାହାଳ ତାଳ କର୍ତ୍ତାଳ ପଟହ ଝମ୍ପୀ ।
ମୋ ପରେ ବିଜେ କରନ୍ତେ ଭାବ ତୋଷଧରି ॥ ଜୁ ଭ-୦

ନୋହୁବେ ସବଙ୍କ କମ୍ପା ବ୍ରହ୍ମ-ପରିକର ।
ଜାଣିଲେ ନିଶ୍ଚୟ ପ୍ରଭୁ ଦକ୍ଷିଣ-କୁଞ୍ଜର ॥
ପୂର୍ବଜରେ ପୂର୍ବଗଜ ଭାବ ଉପୁଜାଇ ।
ପହଣ୍ଡି ବିଜୟ କଲେ ଝୁଲାଇ ଝୁଲାଇ ॥
ଯାର ଗନ୍ଧସାର-ପଙ୍କେ ଭୂଷିତ ହୋଇବେ ।
ଜନପଙ୍କ-ପଙ୍କଜ-ବନକୁ ଉଜାଡ଼ିବେ ॥
ସବୁ ଦିନେ ଲୀଳାସ୍ଥାନ ନୀଳ ମହୀଧର ।
ଭକ୍ତଭାବ-ରଜ୍ଜୁରେ ବନ୍ଧନ ଅଛି ଯାର ॥
ଜଡ଼ି ଯେତେ ଛନ୍ଦ ଏତେ ଭାବୁକ ଜାଣିବେ ।
ବାହୁଡ଼ିବା ହେଲେ ବେଶେ ବ୍ୟାକୁଳ ହୋଇବେ ॥
ଭବ ସାଗର-ସୁବର୍ଣ୍ଣ ତରଣୀ ବିଗ୍ରହ ।
ସୁଭଦ୍ରାଙ୍କୁ ବିଜେ କରାଇଲେ ତଥା ଧରି ॥
ତାପ-ଧ୍ୱସ୍ତ ଖଣ୍ଡ-ଭଞ୍ଜନକୁ ଦଣ୍ଡବର ।
ସୁଦରଶନଙ୍କ ବିଜେ ସେହୁ ପରକାର ॥
ଛନ୍ଦ ପଦ ଦାତା ଯେ ରାଜାଧିରାଜେଶ୍ୱର ।
ବିଜେ କରେ ଦ୍ୱିଜେ ଦେଇ ନିଜ କରଭର ॥
ଢାଳନ୍ତି ଚାମର ଶ୍ୱେତଛତ୍ର ଟେକା ତହିଁ ।
କ୍ଷୀର-ସାଗର-ଲହରୀ ଭ୍ରମ ଉପୁଜାଇ ॥
ଗହଳ ହୋଇଣ କଳାଛତ୍ର ଶୋଭା ଦିଶି ।
ତୁଙ୍ଗ ଶିଖରୀ ପରେ କି ଜଳଦ ଆକର୍ଷି ॥
ପତାକା ବ୍ୟାଜନ୍ତି ଯେତେ ଶୂନ୍ୟେ ନୀରଧାର ।
ସ୍ୱେଦଛଳେ କରେ କରତନୁ ଜରଜର ॥
ଚଞ୍ଚଳା ଖେଳା ଚଳିବା ଖଦ ପୀତବାସ ।
କୁଞ୍ଚିତ ଦ୍ୱିଜ-ଚାତକ ଜଳପାନେ ତୋଷ ॥
ଏ ପ୍ରମାଣେ ବରଷଣ ପୁଞ୍ଜି ତେଣୁ ଚଳ ।
ନିଶାଣ ମଣ୍ଡୂକ-ନାଦେ ଦିଗନ୍ତ ଉଛୁଳ ॥
ପ୍ରଭୁ ଚଳନ ଶବଦ ଜଡ଼ିତ ସ୍ତନିତ ।
ପୁଷ୍ପାଞ୍ଜଳି ବକାବଳୀ ଉଡ଼ି ଖସେ ସତ ॥
ଏମନ୍ତେ ସ୍ନାନମଣ୍ଡପେ ସିଂହାସନ ପର ।
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ॥
ନାଗ ନର କିନ୍ନର ଗନ୍ଧର୍ବ ଛନ୍ତି ରହି ।
ଅନେକ କନକ ଘଟେ ପୂର୍ଣ୍ଣ କରି ତହିଁ ॥
ଢାଳିଲେ ଭୂସୁରେ ନୀର ଶ୍ରୀମୁଖମଣ୍ଡଳେ ।
ଧାରାମାନ ପତନ ହୋଇଲା ମହୋତ୍କଳେ ॥
କି ମେରୁ ଶିଖ-ମାରଗ-ହେମ-ଶୃଙ୍ଗୁ ଖସି ।
ଜାହ୍ନବୀ ଯମୁନା ହରିତାଳ-ଧାରା ଆସି ॥

ଲେପନ ଚନ୍ଦନ ଖସି ପଡ଼ିଲା ଏମନ୍ତ
ସେ ଘନ ଶୃଙ୍ଗୁ କି ଜାତ ତରଳ ରଜତ ॥
ଦେଖିଲା ଆଖିରେ ଦରିଦ୍ରତା ନ ରହିଲା ।
ମନରୁଁ ଦୁଃସହ ଦୁଃଖମାନ ଉପେକ୍ଷିଲା ॥
ହରିଚନ୍ଦନ ସଙ୍ଗରୁ ସେହି ବୋଲି ଘେନ ।
ବସ୍ତ୍ରଗଲେ ହେବେ ଏ ତ ବାଞ୍ଛା ବରଦାନ ॥ ପୃ ୫୧, କୋ: କୃ: ପୁ: ।

## ଜଗନ୍ନାଥ ବର୍ଣ୍ଣନା

ତାତ୍ପର୍ଯ୍ୟ—

କୋଟି-କନ୍ଦର୍ପ-ମୂର୍ତ୍ତି ଧାରଣ କରି ଯାତ୍ରୀଙ୍କୁ ଦର୍ଶନ ଦେବା ସକାଶେ ପ୍ରଭୁ ଜଗନ୍ନାଥ ରତ୍ନସିଂହାସନରେ ବିଜେ କଲେ । କରୁଣାସିନ୍ଧୁରେ ବଡ଼ବାନଳ ଶିଖାରୂପୀ ପ୍ରଭୁଙ୍କ ଶିରରେ ହେମ-ରତନ-ମୁକୁଟ ସପ୍ତ ଶାଖାରେ ଶୋଭା ପାଉଅଛି । ଜଗନ୍ନାଥଙ୍କ ଠାରେ ସାଗରେ ପ୍ରଯୁଜ୍ୟ ନ ହେବ କାହିଁକି ? ତାଙ୍କର କର୍ଣ୍ଣଦେଶରେ ମକରକୁଣ୍ଡଳ ବିରାଜିତ, ତାଙ୍କର ସୁରଙ୍ଗ ଅଧର ପ୍ରବାଳତରଣୀ ରୂପୀ, ସେଥିରେ ଲାବଣ୍ୟଲକ୍ଷ୍ମୀ ଦେଦୀପ୍ୟମାନ । ଦଶ ଅବତାରଲୀଳା ଦୃଶ୍ୟଥିବାରୁ, ସେ ଦର୍ଶକବର୍ଗଙ୍କୁ ସେଠାରେ ବିଭିନ୍ନ ଯୁଗର କଥାମାନ ଦେଖାନ୍ତି । ସ୍ନାନ ଓ ବୃଷ୍ଟି ଏ—ପ୍ରଭୁଙ୍କ ନିଜ ଲୀଳା । ସେମାନଙ୍କୁ ଉଦ୍ଧାର କରିବା ପାଇଁ ସେ ଏ ଦୁଇ ଯାତରେ ଦେବାଳୟରୁ ରାଜଦାଣ୍ଡକୁ ବିଜେ କରନ୍ତି । ସେବକମାନେ ଯଥା ସମୟରେ ପହଣ୍ଡି ଦିଅନ୍ତି । ଯାତ୍ରୀମାନେ ସ୍ନାନ ଶୌଚ ସମାପନ କରି ଜଗନ୍ନାଥଙ୍କ ସିଂହଦ୍ୱାରରେ ଏକତ୍ର ହୋଇ ହରିଧ୍ୱନି କରନ୍ତି । ପ୍ରଭୁଙ୍କ ପାଇଁ ପାଟ ମୁଟୁଲା ପଡ଼େ । ଢୋଲ, ମୃଦଙ୍ଗ, ମର୍ଦ୍ଦଳ, ତାଳ, କଂସାଳ, କର୍ତ୍ତାଳ, ଝାଞ୍ଜ ବାଜେ । ପ୍ରଭୁ "ମୋ ଉପରେ ବିଜେ ହେବେ ବୋଲି ଧରଣୀ ବଣି ଅନନ୍ଦିତ ହୁଅନ୍ତି" । "କୋଉଁବେ ଦେବଙ୍କ କଟା ଦ୍ରୁଷ୍ଟ ପଡ଼ିବ । କାହିଁଲେ ନିଶ୍ଚୟ ପ୍ରଭୁ ଦର୍ଶନ କରିବୁ ।" ଜଗନ୍ନାଥଙ୍କୁ ପୂର୍ଣ୍ଣ ହାତୀ, ବଳଦେବଙ୍କୁ ଐରାବତ ହାତୀ ମନେକରି ପଣ୍ଡାମାନେ ସେମାନଙ୍କୁ ଝୁଲାଇ ଝୁଲାଇ ପହଣ୍ଡି ବିଜେ କରାଇଲେ । ହାତୀ ହେବାରୁ ସେମାନେ ପ୍ରାସାଦ-ଦରି ଛାଡ଼ି ମଣ୍ଡପସର ସ୍ନାନ ପାଇଁ ଇଚ୍ଛାକଲେ । ସ୍ନାନ ପରେ ହାତୀମାନେ ପଙ୍କରେ ଘାଣ୍ଟି ହୁଅନ୍ତି, ପଦ୍ମବନକୁ ଦଳନ୍ତି, ସ୍ନାନ ପରେ ପ୍ରଭୁ ଚନ୍ଦନ-ପଙ୍କ ଚର୍ଚ୍ଚିତ ହୋଇ ଲୋକମାନଙ୍କ ପାପ-ପଦ୍ମବନକୁ ନାଶ କରିବେ । ଲୋକେ ତାହା ନ ବୁଝି, ଆଜି ପ୍ରଭୁଙ୍କର ହାତୀ ବେଶ ହେଲା—ବୋଲି କେବଳ କହନ୍ତି । ଶ୍ରେଷ୍ଠ ନୌକାକୁ ଥୁଆ ରଖା କଲାଭଳି, ସୁଭଦ୍ରାଙ୍କୁ ଭବ-ସାଗର-ସୁବର୍ଣ୍ଣ-ତରଣୀ ଭାବି ସେବକମାନେ ନେଲେ । ସୁଦର୍ଶନ ଚକ୍ରର ମହିମା ଅନନ୍ତ, ଆଧ୍ୟାତ୍ମିକ, ଆଧିଦୈବିକ, ଆଧିଭୌତିକ—ତାପ-ଅସ୍ତ୍ର-ଖଣ୍ଡ ଭାଙ୍ଗିବାକୁ ଯେଉଁ ଚକ୍ର ଦଣ୍ଡରୂପ ଧାରଣ କରିଛନ୍ତି, ସେବକମାନେ ତାଙ୍କୁ କାନ୍ଧରେ ଥୋଇ ବିଜେ କରାଇଲେ । ଇନ୍ଦ୍ରପଦ ଦେବା ପାଇଁ ଯେଉଁ ପ୍ରଭୁ ସମର୍ଥ, ସେ ରାଜାଧିରାଜରୂପୀ ସେବକମାନଙ୍କ ଉପରେ ହାତଭରା ଦେଇ ବିଜେ କଲେ । ସେତେବେଳେ ଶ୍ୱେତାତପତ୍ର ଟେକା ଯାଇଥିଲା, ଚାମର ପଡ଼ୁଥିଲା । ଜଣାଯାଉଥିଲା ଯେପରି କ୍ଷୀରସମୁଦ୍ରରୁ ଲହରୀ ଉଠି ଦେଲା ଯାଉଛି । ଦର୍ଶକବର୍ଗ କଳାଛତା ଧରିଥିଲେ, ଜଣାଯାଉଥିଲା ଯେପରି କଳାହାଣ୍ଡିଆ ମେଘ ରୂପୀ ଶିଖରୀ ମସ୍ତକ ଘୋଟିଲାଣି । ସେହି ମେଘରୁ ପତାକାବ୍ୟାଜରେ ଜଳଧାର ଖସି ସ୍ୱେଦଛଳରେ ଲୋକମାନଙ୍କ ଶରୀର ଓଦା କରୁଥିଲା । ଜଗନ୍ନାଥ ବିଜେ କଲାବେଳେ ଯାତ୍ରୀମାନେ ହଳଦିଆ ଲୁଗା ପିନ୍ଧିଥିଲେ, ତାହା ହଲିଲାବେଳେ ମେଘରେ ବିଜୁଳି ଖେଳିଲା ପରି ଜଣା ଯାଉଥିଲା । ପ୍ରଭୁଙ୍କ ପାଦୋଦକ ପାନ କରି ଭକ୍ତମାନେ ତୃପ୍ତ ହେବା ଦୃଶ୍ୟ ତୃଷାର୍ତ୍ତ ଚାତକ ମେଘଜଳ ପାନ କରି ତୃପ୍ତ ହେବା ତୁଲ୍ୟ ଜଣାଗଲା । ଏହି ପ୍ରକାର ବର୍ଷାକାଳ ପ୍ରମାଣିତ ହେବାରୁ ମୟୂରମାନେ ପୁଚ୍ଛ ତ୍ୟାଗ କଲେ, (ପ୍ରଭୁ ବିଜେ ହେଲାବେଳେ ମୟୂରପୁଚ୍ଛ ଫିଙ୍ଗାଯାଏ)

"ନିଶାଣ (ନାଗରା), ମଣ୍ଡୂକନାଦେ (ବେଙ୍ଗ ରଡ଼ି, ଡୁଳଡୁଳ) ବଗଲ୍ ଉଚ୍ଛୁଳିଲା ।" ପ୍ରଭୁଙ୍କ ଧୀର ଚଳନରେ ଜାତ ହେବା ଶବ୍ଦ ମେଘଗର୍ଜ୍ଜନ ତୁଲ୍ୟ ଏବଂ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଫିଙ୍ଗା ଯାଉଥିବା ପୁଷ୍ପାଞ୍ଜଳି ବକପଂକ୍ତି ତୁଲ୍ୟ ଶରନ୍ମାର୍ଗରେ ହଡ଼ୁ ହଡ଼ୁ ଖସି ପଡ଼ୁଥିବା ପ୍ରାୟ ପ୍ରତୀତ ହେଲା । ଏହିପରି ସ୍ନାନମଣ୍ଡପସ୍ଥିତ ସିଂହାସନରେ ଆସି ଭିଡ଼ଣୀ ସହିତ ପ୍ରଭୁ ବିଜେ କଲେ । ନାଗ, ନର, କିନ୍ନର, ଗନ୍ଧର୍ବ ସମସ୍ତେ ସୁବର୍ଣ୍ଣ କଳସରେ ଜଳ ଧରି ଘୁଞ୍ଚିଛନ୍ତି, ବ୍ରାହ୍ମଣମାନେ ଶ୍ରୀମୁଖମଣ୍ଡଳରେ ଜଳ ଢାଳିଲେ । ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାଙ୍କ ଶରୀରରୁ ଜଳ ଖସିବାରୁ ଜଣାଗଲା, ଯେପରି ମେରୁ ପର୍ବତର ସ୍ଫଟିକ, ମର୍କତ ଓ ସୁବର୍ଣ୍ଣ ଶୃଙ୍ଗମାନଙ୍କରୁ ଯଥାକ୍ରମେ ଗଙ୍ଗା, ଯମୁନା ଓ ହରିତାଳଧାର ଖସି ଆସୁଛି । ଚନ୍ଦନବୋଳା ଅଙ୍ଗରୁ ଚନ୍ଦନ ଝରିପଡ଼ନ୍ତେ ଜଣାଗଲା, "ସେ ଚନ୍ଦନ ଶୃଙ୍ଗରୁ ଜାତ ରଜତ ।" ତାହା ଦର୍ଶନ କରିବାରୁ ଦର୍ଶକମାନଙ୍କ ଚକ୍ଷୁରୁ ଦରିଦ୍ରତା ଦୂର ହେଲା, ମନରୁ ଦୁଃସହ ଦୁଃଖ ଦୂର ହେଲା, ସେମାନେ ଭାବିଲେ—ଚନ୍ଦନ ଲାଗି ହୋଇ ସେ କଳ୍ପତରୁ ହେଲେଣି, ବାଞ୍ଛିତ ବର ପ୍ରଦାନ କରିବେ ।

"ସବୁରୂପେ ଏ ଉପମା ଉତ୍ତମ ସମ୍ଭବେ ।
ବିରାଜିତ ଭୁଜ-ଶାଖା ଅଧର-ପଲ୍ଲବେ ॥
ଭକ୍ତି ମୁକ୍ତି ଫଳ ଅଛୁ ନ ଦେଖନ୍ତି ନେତ୍ର ।
ସ୍ୱଭାବରେ ବ୍ରହ୍ମଦାରୁ ବ୍ୟକ୍ତପଦେ ରହି ॥
ସୁରତରୁ ସ୍ଥାନ ସେନାପଟା ବଲକଳ ।
ଯାହା ପଦେ ସଦା ଛଳଛଳ ଗଙ୍ଗାଜଳ ॥" ୬୪ ।

ତାତ୍ପର୍ଯ୍ୟ—

ଜଗନ୍ନାଥ ହୁଅନ୍ତି—ଦାରୁବ୍ରହ୍ମ, ବ୍ୟକ୍ତ ପଦରେ ବ୍ରହ୍ମଦାରୁ ଅର୍ଥାତ୍ କଳ୍ପତରୁ ଅଟନ୍ତି । ଏ ଉପମାଟି ଉତ୍ତମ ନୁହେଁ । ଭୁଜଦ୍ୱୟ ଶାଖାସଦୃଶ, ଅଧର ପଲ୍ଲବିତ ପତ୍ର, ଭକ୍ତି ମୁକ୍ତି ସେଥିର ଫଳ ହେଲେ ମଧ୍ୟ ତାହା ଲୋକଲୋଚନର ଅଗୋଚର; କଳ୍ପତରୁରେ ମଧ୍ୟ ଫଳ ନ ଥାଏ, କିନ୍ତୁ କାମଧେନୁର ତାହା ଆଶ୍ରୟସ୍ଥଳ । କଳ୍ପତରୁ ଯେପରି ବଲ୍କଳାବୃତ, ପ୍ରଭୁ ଜଗନ୍ନାଥ ସେହିପରି କାଠପଟାବୃତ; ସ୍ୱର୍ଗଙ୍ଗା ଯେପରି କଳ୍ପତରୁ ତଳେ ପ୍ରବାହିତ, ଏଠାରେ ପ୍ରଭୁଙ୍କ ନଖକୋଣରେ ସେ ସେହିପରି ଛଳଛଳ ରହିଛନ୍ତି; ସୁତରାଂ ସ୍ୱୟଂ ଜଗନ୍ନାଥ କଳ୍ପତରୁ ଅଟନ୍ତି ।

"ସ୍ୱର୍ଗରୁ ଏ ଉପମାକାରକ ମୁଁ ଯେ ହେଲି ।
ପୁଲକିତ-ଶରୀରେ ହରିରେ ସ୍ତୁତି କଲି ॥
ମହିମା ଅନନ୍ତ ପ୍ରଭୋ ମହିମା ଅନନ୍ତ ।
ମନୋହାରୀ ସହୋଦର ହୋଇ ଯାଉ ଖ୍ୟାତ ॥
ଧରି ଦର-କର ବକ୍ଷେ ଅଭେଦର ଭର ।
ଯୁଗେ ଯୁଗେ ଧର ନାନାବିଧ ଅବତାର ॥
ଜଗ୍ଧଶଣ-ଅଘ ଜଗ୍ଧଶଣ-ଅଘ-ହର ।
ସ୍ନାନ କରି ହେଲ ଲଙ୍କା ଜଳ କଳେବର ॥
ଭବ-ଭବାଦ୍ରି ପୂଜିତ ହେ ଭବ-ଭବାଦ୍ରି
ଶ୍ରୁତି-କଳଳକ ସଦାନନ୍ଦ ସଦାଶ୍ରିତ ।" ୬୧ । କୋ: ବୃ: ସୂ: ।

ତାତ୍ପର୍ଯ୍ୟ: —

ନବ ଉପେନ୍ଦ୍ର, ନହନ୍ତ—ଏହି ଉପମାକାରଙ୍କ ମୁଁ ଯେ ହେଲ, ତାହା ଶୃଙ୍ଗାର କଥା । ପୁଲକିତ ଶରୀରରେ ମୁଁ ଯେପରି ପ୍ରଭୁଙ୍କୁ ସ୍ତୁତି କରୁଛି, ତାହା ଏହି:—ହେ ପ୍ରଭୋ ! ଆପଣଙ୍କ ମହିମା ଅନନ୍ତ, ମହୀ—ପୃଥିବୀ, ମା—ଲକ୍ଷ୍ମୀ ଆପଣଙ୍କ ମନୋହାରିଣୀ ଅଟନ୍ତି; ଅନନ୍ତ ଶେଷଦେବ, ଆପଣଙ୍କ ଅଗ୍ରଜ ଅଟନ୍ତି । ହେ ପ୍ରଭୋ ! ଆପଣ ଅରି (ଚକ୍ର) ଦର (ଶଙ୍ଖ) କର ଅର୍ଥାତ୍ ଶଙ୍ଖ ଚକ୍ର ହସ୍ତ ଅଟନ୍ତି, ଏବଂ ଆପଣ ଶରୀରୀ ହୋଇ ଯୁଗେ ଯୁଗେ ନାନା ଅବତାର ଧରନ୍ତି । ଆପଣ ବିଭୀଷଣଙ୍କୁ ତାଙ୍କ ଲଙ୍କାରେ ରାଜା କଲେ, ଭୀଷଣ ଅଘାସୁରଙ୍କୁ ମାରି ସାଯୁଜ୍ୟ ମୁକ୍ତି ଦେଲେ । ଆପଣ ହର ଓ ବ୍ରହ୍ମାଙ୍କ ପୂଜ୍ୟ ଓ ବିଶ୍ୱ ବ୍ରହ୍ମାଣ୍ଡର ଶାସକ ଅଟନ୍ତି । ଆପଣ ଅଗ୍ନି (ଶୁଚି) କୁ ଗ୍ରାସ କରି ପବିତ୍ର (ଶୁଚି) ହୋଇ ଅଛନ୍ତି ।

ରଚିବେ "କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ" ଚରିତ ।
ସୁଜାତ ସୁମନାଟି ହୋଇବ ଏହି ଗୀତ ॥
ସୁରଭିରେ ମୋହିତ-ମାନସ ହେବେ ଉଦ୍ଧବ ।
ଗୁଣବନ୍ତେ ହୃଦେ ମାଳା କରିଣ ଧରିବେ ॥
ରସିକ ଭ୍ରମରେ ହେବେ ରସ ଘେନି ବଶ ।
ନିର୍ଗୁଣେ ଘେନିଲେ ନ ଘେନିଲେ ଅଛି କିସ । ୬୨ ।

ତାତ୍ପର୍ଯ୍ୟ:—

ହେ ପ୍ରଭୁ, ମୁଁ "କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ" ଚରିତ ରଚନା କରିବି । ଏହା ଉତ୍ତମ ଜାତିଫୁଲ ତୁଲ୍ୟ ହେଉ; ସାଧୁ ଲୋକ ତାହାର ସୁଗନ୍ଧରେ ମୁଗଧ ହୁଅନ୍ତୁ; ସୁଧୀବର୍ଗ ତାହା ମାଳା ତୁଲ୍ୟ ଧାରଣ କରନ୍ତୁ । ସାହିତ୍ୟ-ରସିକବର୍ଗ ଭ୍ରମର ପରି ଏହି ଫୁଲର ରସ ଗ୍ରହଣ କଲେ ଯଥେଷ୍ଟ, ମୂର୍ଖମାନେ ଭଲ ପାନ୍ତୁ ବା ନ ପାନ୍ତୁ, ସେଥିରେ କିଛି ଯାଏ ଆସେ ନାହିଁ ।

"ନବ ଉପଇନ୍ଦ୍ର, ତବ କୃପାରେ ହୋଇଛି ।
ଏତେ ମନୋରଥ ସାର୍ଥେ କି ଫଳସ୍ଥ ଅଛି ॥"

ଦୃଷ୍ଟାନ୍ତ—୨

ଅବନା ରସତରଙ୍ଗ ଛାଂ, ପଂ—୮

"ବରଧନ ଅନନ୍ତ ଯଶ ଏ ଜଗତର ।
ବରଧନ ଅନନ୍ୟ ସହଜ ଭକତର । ୧ ।"

ତାତ୍ପର୍ଯ୍ୟ:—

ହେ ରାମଚନ୍ଦ୍ର ! ତୁମ୍ଭେ ଏ ଜଗତରେ ଅସୀମ ଯଶ ବୃଦ୍ଧି କରିଅଛ । ଭକ୍ତମାନଙ୍କର ତୁମ୍ଭେ ଶ୍ରେଷ୍ଠ ସମ୍ପଦ ଅଟ ।

"ରକ୍ଷଚକ୍ରଦରକର ସକଳ ସମସ୍ତ ।
ରକ୍ଷ ଚକ୍ର ଦର କର ନବରସମସ୍ତ । ୩ ।"

ହେ ଶଙ୍ଖଚକ୍ରଧାରୀ ! ତୁମ୍ଭେ ନବରସମସ୍ତ; ତୁମ୍ଭେ ସର୍ବଦା ରାକ୍ଷସମାନଙ୍କର ଭୟଦ ଅଟ, ତୁମ୍ଭେ ଆମ୍ଭମାନଙ୍କୁ ଭବଭୟରୁ ରକ୍ଷାକର ।

ଦେବାନ ଦାନ, ମେଦନଗ୍ର। ପ୍ରତ୍ୟେକ ମୂର୍ତ୍ତି ଦେଢ଼ ଫୁଟରୁ ଅଧିକ ହୋଇ ନୁହେଁ। କୃଷ୍ଣ ଭଞ୍ଜ ଖ୍ରୀ: ୧୭୫୪-୭୩ ଯାଏ ଗୁମୁସରର ରାଜା ଥିଲେ। ତାଙ୍କର ଜ୍ୟେଷ୍ଠପୁତ୍ର ଲକ୍ଷ୍ମଣ ଭଞ୍ଜ, କନିଷ୍ଠ ବିକ୍ରମ ଭଞ୍ଜଙ୍କୁ ନ ବର୍ଷ ପର୍ଯ୍ୟନ୍ତ ରାଜଗାଦି ଛାଡ଼ିବାକୁ ବାଧ୍ୟ ହୋଇ, ଖ୍ରୀ: ୧୭୮୨-୯୦ ଯାଏ ରାଜତ୍ୱ କରିଥିଲେ। ସେଥିରେ ଖୋଦିତ ଅନ୍ୟ ଦୁଇ ମୂର୍ତ୍ତି ଯଥାକ୍ରମେ କୃଷ୍ଣ ଭଞ୍ଜ ଓ ଲକ୍ଷ୍ମଣ ଭଞ୍ଜଙ୍କ ଶରୀର ନିର୍ମିତ ଥିଲେ। ଖୋଦିତ ମୂର୍ତ୍ତିରୁ ଦୁଇଟି ରାଜୋଚିତ ବେଶରେ ପ୍ରଭୁଙ୍କଠାରେ ଚନ୍ଦନବେଶ କରି ଉପବିଷ୍ଟ ଥିବା, ଅନ୍ୟ ଦୁଇଟି ସଶସ୍ତ୍ର ଦଣ୍ଡାୟମାନ ଥିବା ଦେଖାଯାଏ। ମନ୍ଦିରର ଦ୍ୱିତୀୟ ଦ୍ୱାରର ଉର୍ଦ୍ଧ୍ୱ ଦେଶରେ ଖଣ୍ଡିଏ ପ୍ରଶସ୍ତ କଳାପ୍ରସ୍ତର ଫଳକରେ ନିମ୍ନଲିଖିତ ଲିପି ଖୋଦିତ ହୋଇଅଛି:—

> 'କୃଷ୍ଣଭଞ୍ଜ ରଜାଙ୍କର' ସର୍ବୋଦା ପାଟ ମହାଦେଈ।
> ଏହାଙ୍କ ପୁଅ ଲକ୍ଷ୍ମଣଭଞ୍ଜ ରଜା। ୯ ପ୍ରାସାଦ ଶ୍ରୀ ବାସୁଦେବ
> ମହାପ୍ରଭୁଙ୍କ ନିର୍ମାଣ କରିଅଛନ୍ତି। ବୀରକେଶରୀ ଦେବ ୫ ଅଙ୍କ,
> ଶାଳିବାହନ ଶକାବ୍ଦ ୧୭୦୮।"

ଖୋଦିତ ଅଙ୍କ ଓ ଶକାବ୍ଦରୁ ମନ୍ଦିରଟି ଲକ୍ଷ୍ମଣଭଞ୍ଜଙ୍କ କୀର୍ତ୍ତି ବୋଲି ସ୍ପଷ୍ଟ ହୁଏ। କୁଳାଡ଼ ନାରାୟଣ ମନ୍ଦିର କୃଷ୍ଣଭଞ୍ଜଙ୍କ ଦ୍ୱାରା ନିର୍ମିତ। ସେ ସମ୍ପର୍କରେ ବହୁତ ଶ୍ରୁତିସୁଖକର କିମ୍ବଦନ୍ତୀ ଅଛି। ଏଠାରେ ତାହା ଲିପିବଦ୍ଧ କରିବା ଅନାବଶ୍ୟକ। ନେଉଗାଁ ରାଠ ମନ୍ଦିର କୋଣାର୍କ ମନ୍ଦିର ଅନୁକରଣରେ ଗଢ଼ାଯାଇଥିଲା। ତାହାର ସୂକ୍ଷ୍ମ କାରୁକାର୍ଯ୍ୟ ଅତୀବ ସୁନ୍ଦର। କନୈକ ତେଲେଙ୍ଗା ମନ୍ଦିରସ୍ୱାମୀଙ୍କ ଉଦାସୀନତା ଯୋଗୁଁ ତାହା ଭଙ୍ଗିଯାଇ ନଷ୍ଟ କରି ରଖାଯାଇଛି। ସଦାଶୟ ସରକାରଙ୍କର ସେଥିପ୍ରତି ଦୃଷ୍ଟି ପଡ଼ିଲେ ଓଡ଼ିଶାର ଗୋଟିଏ ପ୍ରସିଦ୍ଧ ସ୍ଥାପତ୍ୟକଳାବିଶିଷ୍ଟ ସ୍ଥାପତ୍ୟର ପୁନରୁଦ୍ଧାର ହୋଇ ପାରିବ।



---

Kesarapalle. An old temple was excavated form the foot of the hill close by, and the image (One of Suryanarayana Murty the Sun God) was carried to Buguda, where it was consecrated in a new temple build in its honour in the shape of the Sun Car. In former times a Kesari Raja (? Orissa) is said to have been lived here, and carved stones and very large bricks are shown on the hill. Several images are said to have been found on the hill and carried off. Buddist or Jain they happened to be, are not known." —Sewell.

** ପୃ ୧୦, ଗୁ: ଗ:

---

ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଜୁବିଲି ପ୍ରେସରେ ମୁଦ୍ରିତ। ୧୯୩୮—୧୦୦୦